କ୍ଷୁଦ୍ରଗଳ୍ପ ସଂକଳନ-

# ଯୁଗ-ଯନ୍ତ୍ରଣା

(ତୃତୀୟ ଭାଗ)

ଜନ୍ମେଜୟ ବାବୁ

ଗାଳ୍ପିକ
ଜନ୍ମେଜୟ ବାବୁ
ପଟ୍ଟନାୟକ ପଡ଼ା, ସମ୍ବଲପୁର

ପ୍ରଥମ ମୁଦ୍ରଣ
ମହାବିଷ୍ଣୁବ ସଂକ୍ରାନ୍ତି
୧୩.୪.୨୦୧୨



ପ୍ରକାଶକ
ନବାର୍କ ପ୍ରକାଶନ ଓ
ସିଦ୍ଧେଶ୍ୱରୀ ଧର୍ମ- ସାହିତ୍ୟ-ସଂସ୍କୃତି ସଂସଦ,
ପଟ୍ଟନାୟକ ପଡ଼ା, ସମ୍ବଲପୁର

ଡି.ଟି.ପି.
ପ୍ରଜ୍ଞା ସିଷ୍ଟମ,
ଚିତ୍ରଗୁପ୍ତ ଛକ, ମହାନ୍ତିପଡା, ସମ୍ବଲପୁର

ମୂଲ୍ୟ- ୫୦ ଟଙ୍କା (ପଚାଶ ଟଙ୍କା)

Juga Jantrana (Odia short stories)
by Janmejaya Babu

## ଗାଳ୍ପିକଙ୍କ କଲମରୁ............

ଯୁଗ-ଯନ୍ତ୍ରଣାର ତୃତୀୟ ଭାଗଟି ଅନେକ ଦିନରୁ ପ୍ରକାଶନ ପାଇଁ ପ୍ରସ୍ତୁତ ହୋଇ ରହିଥିଲେ ହେଁ କେତେକ ଅନିବାର୍ଯ୍ୟ କାରଣବଶତଃ ପ୍ରକାଶିତ ହୋଇପାରୁନଥିଲା। ଏବେ ତାହା ପୁସ୍ତକାକାରରେ ପ୍ରକାଶ ପାଇଛି। ଆଗରୁ ଯୁଗ-ଯନ୍ତ୍ରଣାର ଦିଓଟି ଭାଗ ପ୍ରକାଶ ପାଇସାରିଛି। ବର୍ତ୍ତମାନ ପ୍ରକାଶ ପାଇଥିବା ଯୁଗ-ଯନ୍ତ୍ରଣାରେ ସ୍ଥାନିତ ଗଳ୍ପଗୁଡ଼ିକ ୧୯୯୦ ପୂର୍ବରୁ ଲିଖିତ, ଯଦିଓ କେତେଗୁଡ଼ିଏ ଗଳ୍ପ ୧୯୯୦ ପରେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଛି।

ଯୁଗ-ଯନ୍ତ୍ରଣାର ପୂର୍ବ ଦିଓଟି ଭାଗ ପ୍ରକାଶ ପାଇଲାପରେ ଅନେକ ବିଦଗ୍ଧ ପାଠକ ଯୁଗ-ଯନ୍ତ୍ରଣା ଉପରେ ସେମାନଙ୍କର ମତାମତ ଲିଖିତାକାରରେ ମତେ ଜଣାଇଥିଲେ। ପ୍ରାୟ ସବୁ ପାଠକଙ୍କ ମତାମତ ଏକ ପ୍ରକାର ଥିଲା। ସମସ୍ତେ ମତେ ପରାମର୍ଶ ଦେଇଥିଲେ ଯେ, ମୁଁ ଏ'ଭଳି କ୍ଷୁଦ୍ର କ୍ଷୁଦ୍ର ଗଳ୍ପ ନ ଲେଖି ଦୀର୍ଘ ଗଳ୍ପମାନ ଲେଖେ। ସେମାନଙ୍କ ମତାମତର [redacted]ରେ ଦିଓଟି ଅଭିଯୋଗ ଥିଲା। ପ୍ରଥମ ଅଭିଯୋଗଟି ହେଲା, ମୋ'ର ଗଳ୍ପ ଗୁଡ଼ିକରେ କାହାଣୀ ନାହିଁ। ଆଉ ଦ୍ୱିତୀୟଟି- କାହାଣୀର ଗୁମ୍ଫନ ନ ଥିବାରୁ ଗଳ୍ପଗୁଡ଼ିକ ପ୍ରଭାବଶାଳୀ ହୋଇପାରି ନାହିଁ।

ସେତେବେଳେ ସେହି ଅଭିଯୋଗ ଦିଓଟି ମୋ'ର ମନକୁ ଖୁବ୍ ଆନ୍ଦୋଳିତ କରିଥିଲା। ତଥାପି, ଦ୍ୱିତୀୟ ଅଭିଯୋଗଟି ମୁଁ ଗ୍ରହଣ କରିଥିବା ବେଳେ ପ୍ରଥମଟିକୁ କାହିଁକି ଗ୍ରହଣ କରିପାରିନଥିଲି। କାରଣ, ପ୍ରତି ଗଳ୍ପରେ [redacted] ପ୍ରଚ୍ଛନ୍ନୀଭୂତ କାହାଣୀଟିଏ ଥାଏ। କାହାଣୀ ବ୍ୟତିରେକ ଗଳ୍ପର କଳ୍ପନା କରାଯାଇନପାରେ। ଦି'ଧାଡ଼ିଆ ଗଳ୍ପଟିଏ ହୋଇଥିଲେ ହେଁ ସେଥିରେ ନିଶ୍ଚୟ କାହାଣୀଟିଏ ଲୁଚି ରହିଥାଏ। ଏଠି ଗୋଟେ ଦି'ଧଡ଼ିଆ ଗଳ୍ପର ଉଦାହରଣ ଦିଆଯାଇପାରେ। "ରାମ ନାମଧେୟ ଜଣେ ଉତ୍ତମ ବ୍ୟକ୍ତି ୧୯୪୦ ମସିହାରେ ଜନ୍ମଗ୍ରହଣ କରିଥିଲେ। ୨୦୦୦ ମସିହାରେ କିନ୍ତୁ ଅସଂଖ୍ୟ ଲୋକଙ୍କୁ ଶୋକ ସାଗରରେ ଭସାଇ ଦେଇ ଇହସଂସାରୁ ଚାଲିଗଲେ।"

ଏହି ଦି'ଧାଡ଼ିଆ ଗଳ୍ପଟିକୁ ଜଣେ ପାଠକ ପଢ଼ି ପଚାରିପାରନ୍ତି, ଏଥିରେ କାହାଣୀ

କାହିଁ ? ଯଦି ପାଠକ ଜଣକ ଟିକିଏ ଅନ୍ତର୍ଦୃଷ୍ଟି ନେଇ ଚିନ୍ତା କରନ୍ତେ, ତେବେ ଏଇ ଗଳ୍ପରୁ ଗୋଟେ ଦୀର୍ଘ କାହାଣୀର ସୂଚନା ପାଇପାରନ୍ତେ, ଏଥିରେ ସନ୍ଦେହର ତିଳେ ହେଲେ ଅବକାଶ ନାହିଁ। ଅର୍ଥାତ୍, ରାମ ନାମଧେୟ ବ୍ୟକ୍ତିଙ୍କ ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ଏକ ଦୀର୍ଘ ସମୟ ରହିଛି, ସେହି ସମୟ ମଧ୍ୟରେ ତାଙ୍କ ଜୀବନର ଦୀର୍ଘ କାହାଣୀଟିଏ ଯେ ରହିଥିବ, ଏହା ନିଶ୍ଚିତ। ସୁତରାଂ, ଯେତେ ଛୋଟିଆ ଗଳ୍ପଟିଏ ହୋଇଥାଉନା କାହିଁକି, ସେଥିରେ କାହାଣୀ ନାହିଁ ବୋଲି କେମିତି କହିପାରିବା ?

ସେ ଯାହାହେଉ, ମୁଁ ମୋ'ର ବିଦଗ୍ଧ ପାଠକଙ୍କ ପରାମର୍ଶକୁ ଗ୍ରହଣ ପୂର୍ବକ ପରବର୍ତ୍ତୀ କାଳରେ ଛୋଟିଆ ଛୋଟିଆ ଗଳ୍ପ ନ ଲେଖି ଅସଂଖ୍ୟ ଦୀର୍ଘ ଗଳ୍ପମାନ ରଚନା କରିଥିଲି, ଏବେ ବି ଲେଖୁଛି। ତା'ମାନେ ଏହା ନୁହେଁ, ଆଗରୁ ଆଦୌ ଦୀର୍ଘ ଗଳ୍ପ ଲେଖି ନ ଥିଲି। ଏଠି ମୁଁ କହିଦେବାକୁ ଚାହେଁ, ମୋ'ର କଲମ ଚାଳନା ଉପନ୍ୟାସ ଲେଖାରୁ। ୧୯୯୪ ସାଲ୍‌ରେ "ଅନନ୍ୟା" ଶୀର୍ଷକ ମୋ'ର ଗଳ୍ପ ସଂକଳନଟିଏ ପ୍ରକାଶ ପାଇସାରିଛି, ଯେଉଁଥିରେ ମୋ'ର କେତୋଟି ଦୀର୍ଘ ଗଳ୍ପ ବି ସନ୍ନିବେଶିତ ହୋଇଛି। ଆଗାମୀ ଦିନରେ ଦି' ତିନିଟା ଗଳ୍ପ ସଂକଳନ ମୋ'ର ଦୀର୍ଘ ଗଳ୍ପଗୁଡ଼ିକୁ ନେଇ ପ୍ରକାଶ କରିବାର ଇଚ୍ଛା ଅଛି। ଦେଖାଯାଉ ଭଗବାନଙ୍କ ଇଚ୍ଛା କ'ଣ !!

ଯୁଗ-ଯନ୍ତ୍ରଣା (ତୃତୀୟ ଭାଗ)ରେ ସନ୍ନିବେଶିତ ଗଳ୍ପଗୁଡ଼ିକ ଯେଉଁ ପତ୍ର-ପତ୍ରିକାରେ ପ୍ରକାଶିତ ହୋଇଛି, ସେହି ପତ୍ରପତ୍ରିକାର ସମ୍ପାଦକମାନଙ୍କୁ ମୁଁ ମୋ'ର ଆନ୍ତରିକ ଧନ୍ୟବାଦ ଜଣାଉଛି।

ପରିଶେଷରେ ଯୁଗ-ଯନ୍ତ୍ରଣାର ତୃତୀୟ ଭାଗ ପ୍ରକାଶନ ପାଇଁ ଯେଉଁମାନେ ମତେ ସାହାଯ୍ୟ- ସହଯୋଗ କରିଛନ୍ତି, ସେମାନଙ୍କୁ ମୁଁ ମୋ'ର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି।

ଆପଣଙ୍କ ବିଶମ୍ବଦ
ଜନ୍ମେଜୟ ବାବୁ
ପଟ୍ଟନାୟକ ପଡ଼ା, ସମ୍ବଲପୁର

# ବଦଳି

କିଶୋର ଜାଣେ, ସରକାରୀ ଚାକିରୀ କଲେ, ବଦଳି ହୁଏ। ଏହା ବି ସେ ଜାଣେ ଯେ, କେହି ହଇରାଣ ଓ ଅପଦସ୍ଥ ହେବା ଲାଗି ଚାକିରୀ କରେ ନାହିଁ। ଏବେ ତା'ର ଯେଉଁ ବଦଳି ହୋଇଛି, ତାହା ଯେ ତାକୁ ହଇରାଣ ଓ ଅପଦସ୍ଥ କରିବାର ଗୋଟେ ସୁପରିକଳ୍ପିତ ଚକ୍ରାନ୍ତରେ ପକାଇବା ପାଇଁ ଉଦ୍ଦିଷ୍ଟ, ଏଥିରେ ତିଳେ ହେଲେ ସନ୍ଦେହର ଅବକାଶ ନାହିଁ।

ସେଦିନ ଅଫିସ୍‌ରୁ ବଦଳି ଆଦେଶ ପାଇ ସେ ଭାବିଥିଲା, ଦୁନିଆଁରେ ମାନବିକତା ମରିଗଲାଣି। ବଦଳି ହାଓ୍ୱା ଦେଖି ସେ ଅବଶ୍ୟ ଜାଣିପାରିଥିଲା, ତା'ର ବଦଳି ଏ'ବର୍ଷ ନିଶ୍ଚୟ ହେବ। ତେବେ କେଉଁ ଦୂରସ୍ଥାନକୁ ବଦଳି ହେବ, ଏହା ସେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରିନଥିଲା। ତାକୁ ବେଶି ଦୁଃଖ ଲାଗିଥିଲା ଏଥିପାଇଁ ଯେ, ଯେଉଁ ନିୟମରେ ବଦଳି କରାଯାଇଥିଲା, ସେହି ନିୟମରେ ତା' ଭଳିଆ ଅନେକ କର୍ମଚାରୀ ପଡୁଥିଲେ ହେଁ ତାକୁ କେବଳ ଦୂରସ୍ଥାନକୁ ବଦଳି କରାଯାଇଥିଲା ଏବଂ ଅନ୍ୟମାନଙ୍କୁ ସେମାନଙ୍କ ମନ ମୁତାବକ ସ୍ଥାନଗୁଡ଼ିକୁ ବଦଳି ହୋଇଥିଲା। ତେଣୁ, ସେ ନିଃସନ୍ଦେହରେ ଭାବିଥିଲା ଯେ, ତା' ବିରୁଦ୍ଧରେ ଏକ ପ୍ରକାର ଷଡ଼ଯନ୍ତ୍ର କରାଯାଇଛି, ତାକୁ ହଇରାଣ ହରକତ କରିବା ପାଇଁ ରୀତିମତ ଯୋଜନା କରାଯାଇଛି।

ଅନେକେ ତାକୁ ପରାମର୍ଶ ଦେଇଥିଲେ ଯେ, ସେ ଅଫିସର୍‌ଙ୍କଠାରେ ତା'ର ଅସୁବିଧା ଜଣାଉ। ତେଣୁ, ସେ ଅଫିସରଙ୍କ ସହିତ ସାକ୍ଷାତ କରିବା ପାଇଁ ମନସ୍ଥ କରିଥିଲା। ମାତ୍ର, ଅନେକ ଦିନ ଅଫିସ୍‌ରେ ଜଗି ରହିବା-ସତ୍ତ୍ୱେ ସେ ଅଫିସରଙ୍କୁ ସାକ୍ଷାତ କରିପାରିନଥିଲା। ଶେଷରେ ସେ ଜାଣିବାକୁ ପାଇଥିଲା ଯେ, ଅଫିସର୍ ତାଙ୍କର ସରକାରୀ ବାସଭବନରେ ଅଫିସ୍ ଖୋଲିଥିବାରୁ ଅଫିସ୍‌କୁ ଆଉ ଆସୁନାହାଁନ୍ତି।

ତେଣୁ, ଦିନେ କିଶୋର ଯାଇ ପହଞ୍ଚିଥିଲା, ଅଫିସରଙ୍କ ସରକାରୀ ବାସଭବନରେ। ଅଫିସର୍ ମହୋଦୟ ସେତେବେଳେ ଗୃହରେ ଉପସ୍ଥିତ ଥିଲେ। ସେ କିଶୋରକୁ ଦେଖି ଗୋଟେ ବିଦ୍ରୂପାତ୍ମକ ସ୍ୱରରେ ପଚାରିଥିଲେ,- "କ'ଣ ହେଲା ତମର, ଭଲରେ ଅଛ ତ ?"

ଅଫିସରଙ୍କ ବିଦ୍ରୂପାତ୍ମକ ପ୍ରଶ୍ନର ହଳାହଳକୁ ଅତି କଷ୍ଟରେ ପିଇ ଦେଇ କିଶୋର ଟିକିଏ ନରମ କଣ୍ଠରେ ତାଙ୍କୁ କହିଥିଲା,- "ଆଜ୍ଞା, ମୋ'ର ଗୋଟେ ଅସୁବିଧା ଜଣାଇବାକୁ ଆସିଛି।"

- "ହଁ, କୁହ... ତମର କ'ଣ ଅସୁବିଧା ହେଉଛି ଯେ!" ସେ ଏମିତି ରୁକ୍ଷ ସ୍ୱରରେ କହିଥିଲେ ଯେ, କିଶୋର ଦବି ଯାଇଥିଲା। ମାତ୍ର, ପର ମୁହୂର୍ତ୍ତରେ କିଶୋର ଶକ୍ତି ସଂଚୟ କରି ତାଙ୍କୁ କହିଥିଲା,- "ମୋ'ର ବଦଳିର ପରିବର୍ତ୍ତନ ପାଇଁ ଆସିଛି। ସେଠି ମୋ'ର ବହୁତ ଅସୁବିଧା ହେଉଛି। ମତେ ବି ଅନ୍ୟ କର୍ମଚାରୀଙ୍କ ଭଳି ଗୋଟେ ସୁବିଧା ସ୍ଥାନକୁ ବଦଳି କରି ଆଣନ୍ତୁ।"

- "ଆପାତତଃ ସମ୍ଭବପର ନୁହେଁ!!" ଦୃଢ଼ୋକ୍ତି ସହିତ ସେ ପ୍ରକାଶ କରିଥିଲେ।

- "ଅଥଚ, ଏଇ କିଛି ଦିନ ଭିତରେ କେତୋଟି ବଦଳିର ଯେଉଁ ପରିବର୍ତ୍ତନ ହେଲା, ତାହା କେମିତି ସମ୍ଭବପର ହୋଇପାରିଲା?" କିଶୋର ଜାଣିଥିଲା, ଅଫିସର୍ ଅନ୍ୟାୟ ଓ ଦୁର୍ନୀତିପୂର୍ଣ୍ଣ ଉପାୟରେ କେତୋଟି ବଦଳି ଆଦେଶକୁ ପରିବର୍ତ୍ତନ କରିଛନ୍ତି। ତେଣୁ, ପରିସ୍ଥିତିର ଫାଇଦା ଉଠାଇ କିଶୋର ଉପରୋକ୍ତ ଜିଜ୍ଞାସା ଅଫିସରଙ୍କୁ ପଚାରି ଦେଇଥିଲା। ଅଫିସର୍ କିନ୍ତୁ ଖୁବ୍ ରାଗିଯାଇଥିଲେ। ଆଉ ରାଗାନ୍ୱିତ ଅବସ୍ଥାରେ ନିଜର ଆଖି ଦିଓଟିକୁ ବିସ୍ଫାରିତ କରି ଧମକପୂର୍ଣ୍ଣ ସ୍ୱରରେ କିଶୋରକୁ କହିଥିଲେ,- "ଜାଣୁଛ, କାହା ସମ୍ମୁଖରେ ତମେ କଥାବାର୍ତ୍ତା ହେଉଛ....!!"

- "ଭଲ ଭାବରେ ଜାଣୁଛି!!" କିଶୋର ବି ନିର୍ଭୟରେ ଅଫିସରଙ୍କ ଆଖି ସହିତ ଆଖି ମିଳାଇ କହିଥିଲା।

ଅଫିସର୍ ବୋଧହୁଏ ଜାଣି ପକାଇଥିଲେ ଯେ, କିଶୋର ଡରିବାର ପ୍ରାଣୀ ନୁହେଁ। ତେଣୁ, ନିଜର ଦୁର୍ନୀତିକୁ ଘଣ୍ଟ ଘୋଡ଼ାଇବା ପାଇଁ ସେ ଟିକିଏ ନରମ କଣ୍ଠରେ କିଶୋରକୁ ସଫେଇ ଦେଇ କହିଥିଲେ,- "କେତୋଟି ବଦଳିର ଯେଉଁ ପରିବର୍ତ୍ତନ କଥା ତମେ କହୁଛ, ତାହା ତ ଉଚ୍ଚ କର୍ତ୍ତୃପକ୍ଷଙ୍କ ଆଦେଶମତେ ହୋଇଥିଲା।"

କିଶୋର କିନ୍ତୁ ଅଫିସରଙ୍କ ସଫେଇକୁ ବିଶ୍ୱାସ କରିପାରିନଥିଲା। କାରଣ, ସେ ପୂରାପୂରି ଜାଣିଥିଲା ଯେ, ଉକ୍ତ ବଦଳିଗୁଡ଼ିକର ପରିବର୍ତ୍ତନ ପ୍ରକାଶ୍ୟ ଦୁର୍ନୀତିର ଆଶ୍ରୟ ନେଇ କରାଯାଇଥିଲା। ତା'ଛଡ଼ା, ସେତେବେଳେ ସେ ବିଷୟକୁ ନେଇ କର୍ମଚାରୀ

ମହଲରେ ଗୋଟେ ଅଛିଣ୍ଡା ଚର୍ଚ୍ଚା ଚାଲିଥିଲା । ତେଣୁ, ସେ ଅଫିସରଙ୍କ ଉପରୋକ୍ତ ସଫେଇକୁ ଖଣ୍ଡନ କରି ଦୃଢ଼ତା ସହିତ ତାଙ୍କୁ ପଚାରିଥିଲା,- "ଦେଖାଇପାରିବେ, ସେହି ଆଦେଶ, ଯାହା ବଳରେ ଆପଣ ଉକ୍ତ ବଦଳିଗୁଡ଼ିକର ପରିବର୍ତ୍ତନ କରିଛନ୍ତି ?"

ଏ'ଭଳି ଜିଜ୍ଞାସାଟିଏ କିଶୋର ପଚାରି ଦେବ ବୋଲି ଅଫିସର୍ ଆଦୌ ପ୍ରସ୍ତୁତ ନଥିଲେ । ତେଣୁ, ସେ ଅସ୍ୱାଭାବିକ ହୋଇଉଠିଥିଲେ । କିନ୍ତୁ, ପରମୁହୂର୍ତ୍ତରେ ନିଜର ଅସ୍ୱାଭାବିକତାକୁ ଲୁଚାଇବା ପାଇଁ ସେ ଅଯଥା ରାଗି ଉଠି ଧୈର୍ଯ୍ୟ ହରାଇ ବସିଥିଲେ । ଯାହାଫଳରେ ତାଙ୍କର ମୁଖ ରକ୍ତବର୍ଣ୍ଣ ହୋଇଯାଇଥିଲା । ସେ ଖାପ୍ ଛଡ଼ା ସ୍ୱରରେ କିଶୋରକୁ ଧମକାଇ କହିଥିଲେ,- "ତମର ସାହସ ତ କିଛି କମ୍ ନୁହେଁ । ଜାଣିଛ... ମୁଁ ଚାହିଁଲେ, ତମର କ'ଣ ନା କ'ଣ କରିଦେବି ! !"

କିଶୋର କିନ୍ତୁ ସ୍ଥିର ମୁଦ୍ରାରେ ଛିଡ଼ା ହୋଇ ରହିଥିଲା । ଏପରିକି ଅଫିସରଙ୍କ ଧମକର ପ୍ରତିବାଦ ବି କରି ନ ଥିଲା । କାରଣ, ସେ ଜାଣୁଥିଲା, ଏହି ଧୂର୍ତ୍ତ ବନ୍ୟ ବିରାଡ଼ି ରୂପୀ ଅଫିସରଙ୍କ ଆୟୁଷ ଏହି ଅଫିସ୍‌ରେ ମାତ୍ର କେଇଟା ଦିନ ଅଛି । ତାଙ୍କର ପ୍ରଶାସନିକ ଅଯୋଗ୍ୟତା ଉଚ୍ଚ କର୍ତ୍ତୃପକ୍ଷଙ୍କଠାରେ ଆଉ ଲୁକ୍କାୟିତ ହୋଇରହିନାହିଁ । ଦିନ କେଇଟାରେ ସେ କେଉଁଠି ଯାଇ ପଡ଼ିଥିବେ ।

ତେଣୁ, ସେଦିନ କିଶୋର ଅଫିସରଙ୍କ ସରକାରୀ ବାସଭବନରୁ ଫେରି ଆସିଥିଲା । ଫେରିଲା ବେଳେ ସେ ଭାବିଥିଲା, ତା'ଠାରେ କିଛି ବୋଧହୁଏ ଅଭାବ ରହିଥିଲା ଅବା ସେ ଯେଉଁ ଉପାୟରେ ଅଫିସ୍ କାର୍ଯ୍ୟ କରୁଥିଲା, ତାହା ସମୟୋପଯୋଗୀ ନଥିଲା ଯାହାଫଳରେ ତାକୁ ଦୂରସ୍ଥାନକୁ ବଦଳି ହୋଇଥିଲା । ସେ ଯଦି ଅଫିସ୍- କାର୍ଯ୍ୟ ଠିକ୍ ଭାବରେ କରିନଥାନ୍ତା, ଧପ୍‌ପାବାଜି କରିଥାନ୍ତା, ପାଞ୍ଚଜଣଙ୍କୁ ହଇରାଣ ହରକତ କରିଥାନ୍ତା, ଉଚ୍ଚକର୍ତ୍ତୃପକ୍ଷଙ୍କୁ ଧମକ ଦେଇ ବିଚ୍‌ରାସ୍ତାରେ ବେଇଜ୍ଜତ କରିଥାନ୍ତା, ତାହାହେଲେ ବୋଧହୁଏ ତାକୁ ତା'ର ମନ ମୁତାବକ ସ୍ଥାନକୁ ବଦଳି ହୋଇଥାନ୍ତା । ସେ କିନ୍ତୁ ସେସବୁ କରି ପାରିନଥିଲା । ତେଣୁ, ସେଥିର ସଜା ସେ ପ୍ରତିକ୍ଷଣରେ ଭୋଗୁଥିଲା । ଏହାଛଡ଼ା, ତା'ର ବଦଳିରୁ ସେ ଗୋଟେ ନୂଆ ଅନୁଭୂତି ଉପଲବ୍ଧି କରିଥିଲା । ସେ ଜାଣିଥିଲା, ଆନ୍ତରିକ କାର୍ଯ୍ୟଦକ୍ଷତା ଓ ସାଧୁତାର ଗୋଟେ ମୂଲ୍ୟ ଅଛି । ଏବେ ସେହି ଆନ୍ତରିକ କାର୍ଯ୍ୟଦକ୍ଷତା ଓ ସାଧୁତାର ନିର୍ମମ ହତ୍ୟା ହେଉଥିବା ଦୃଶ୍ୟ ସେ ଅଙ୍ଗେ ନିଭେଇଥିଲା ! !

* ୧- ୭ ଜାନୁୟାରୀ ୧୯୮୯ର ପ୍ରଜାତନ୍ତ୍ର ସାପ୍ତାହିକୀରେ ପ୍ରକାଶିତ ।

# ଜନ୍ମଦିନ

ବିଗତ ୨୪ ବର୍ଷ ଧରି ପାଣିଗ୍ରାହୀ ବାବୁ ନିଜ ପୁତ୍ରର ଜନ୍ମଦିନ ପାଳନ କରିଆସୁଛନ୍ତି। ପୁଣି ଅତି ନିରାଡ଼ମ୍ବର ଭାବରେ ସେ ପୁତ୍ରର ଜନ୍ମଦିନଟି ପାଳନ କରନ୍ତି। ପୁତ୍ରର ଜନ୍ମଦିନରେ ଠାକୁରଙ୍କ ନିକଟରେ ପୁତ୍ରର ମଙ୍ଗଳ ମନାସି ସାମାନ୍ୟ ପୂଜାଟିଏ ହୁଏ। ତା'ପରେ ଭଜନ ବୋଲା ହୁଏ। ଶେଷରେ ଠାକୁରଙ୍କଠାରେ ଅନ୍ନଭୋଗ ଲାଗି ହୁଏ ଏବଂ ଉପସ୍ଥିତ ଅତିଥିମାନଙ୍କୁ ପଂକ୍ତି ଭୋଜନରେ ଭୋଗ ବଣ୍ଟା ହୁଏ। ଏହି ଜନ୍ମଦିନ ସମାରୋହରେ ପ୍ରତିବର୍ଷ ୧୫, ୨୦ଜଣ ଅତିଥି ଆମନ୍ତ୍ରିତ ହୋଇଥାନ୍ତି।

ଏ'ବର୍ଷ ପାଣିଗ୍ରାହୀ ବାବୁ ପୁତ୍ରର ଜନ୍ମଦିନଟିକୁ ଆଡ଼ମ୍ବରପୂର୍ଣ୍ଣ ଭାବରେ ପାଳନ କରିବାକୁ ଭାବୁଛନ୍ତି। କାରଣ, ତାଙ୍କର ପୁତ୍ର ଆଇ.ଏ.ଏସ୍. ପାଇଲା ପରେ ତାଙ୍କର ସହରରେ ହିଁ ସାହେବ ଚାକିରୀ ପାଇଛି। ସେ ଯୋଜନା କରିଛନ୍ତି, ତାଙ୍କ ପୁତ୍ରର ଜନ୍ମଦିନରେ ସହରର ବଡ଼ ବଡ଼ ସାହେବ (ଅଫିସର)ଙ୍କୁ ନିମନ୍ତ୍ରଣ ଦିଆଯିବ, ବଡ଼ ଆକାରରେ ଭଜନ ସମାରୋହଟିଏ ହେବ। ଏହାଛଡ଼ା, ପଂକ୍ତି ଭୋଜନରେ ଅନ୍ତତଃ ୨୦୦ ଜଣଙ୍କୁ ଭୋଗ ବଣ୍ଟାଯିବ।

ପାଣିଗ୍ରାହୀ ବାବୁଙ୍କ ଜୀବନରେ ତାଙ୍କର ଏଇପୁତ୍ରଟି ହିଁ ଏକମାତ୍ର ସାହାରା। ତାଙ୍କର ସ୍ତ୍ରୀ ପୁତ୍ରର ଜନ୍ମବେଳେ ହିଁ ଚିରଦିନ ପାଇଁ ଆଖି ବୁଜି ଦେଇଥିଲେ। ସେ କିନ୍ତୁ ଭାଙ୍ଗି ପଡ଼ିନଥିଲେ। ଆଉ ତାଙ୍କର ପୁତ୍ରକୁ ଉଭୟ ମାତା ଓ ପିତାର ସ୍ନେହ ଦେଇ ବଡ଼ କରିଥିଲେ। ଅତି ଛୋଟ ବୟସରୁ ତାଙ୍କର ପୁତ୍ର ଖୁବ୍ ଚାଲାକ ଓ ପ୍ରତିଭାବାନ ଥିଲା। ମାଟ୍ରିକ ପରୀକ୍ଷାରେ ସେ ପ୍ରଥମ ୧୦ ଜଣଙ୍କ ମଧ୍ୟରେ ସ୍ଥାନ ଗ୍ରହଣ କରିଥିଲା। କଲେଜସ୍ତରରେ ବି ସେ ପ୍ରତି ଶ୍ରେଣୀରେ ପ୍ରଥମ ସ୍ଥାନ ନେଇ ଉତ୍ତୀର୍ଣ୍ଣ ହୋଇଥିଲା। ଶେଷରେ ଠାକୁରଙ୍କ ଅପାର କରୁଣାରୁ ତାଙ୍କର ସ୍ୱପ୍ନ ମୁତାବକ ତାଙ୍କର ପୁତ୍ର ଏବେ ଆଇ.ଏ.ଏସ୍. ପାଇ ବଡ଼ ସାହେବଟିଏ ହୋଇପାରିଛି।

ତାଙ୍କ ପୁତ୍ରର ଜନ୍ମଦିନ ଆଉ ଜମା ଗୋଟେ ମାସ ରହିଲା। ଏବେଠୁଁ ଯୋଗାଡ଼ଯନ୍ତ୍ର ନ କଲେ, ଠିକ୍ ବେଳକୁ ଅସୁବିଧା ହେବ ବୋଲି ପାଣିଗ୍ରାହୀ ବାବୁ ତତ୍ପର ହୋଇ

ଉଠୁଥିଲେ। ତା'ଛଡ଼ା, ପୁତ୍ରକୁ ଆଗରୁ ତା'ର ଜନ୍ମଦିନ ପାଳନ ବିଷୟରେ ଜଣାଇ ଦେବା ଉଚିତ ବୋଲି ବି ସେ ଭାବୁଥିଲେ।

ଦିନେ ଅଫିସ୍ ଗଲାବେଳେ ତାଙ୍କର ପୁତ୍ରକୁ ପାଣିଗ୍ରାହୀ ବାବୁ କହିଥିଲେ, "କିରଣ, ତୋ'ର ଜନ୍ମଦିନ ଆଉ ଗୋଟେ ମାସ ରହିଲା। ମୁଁ ଭାବୁଛି, ଏ'ବର୍ଷ ତୋ'ର ଜନ୍ମଦିନଟି ଯାକଜମକରେ ମନାଯିବ। ଅନ୍ତତଃ ୨୦୦ ଜଣଙ୍କୁ ତୋ'ର ଜନ୍ମଦିନରେ ସାମିଲ୍ ହେବା ପାଇଁ ନିମନ୍ତ୍ରଣ ଦିଆଯିବ, ବଡ଼ ଆକାରରେ ଭଜନ ସମାରୋହଟିଏ ହେବ।"

ଏତକ କହି ପାଣିଗ୍ରାହୀ ବାବୁ ପୁତ୍ରର ମୁଖକୁ ଦେଖିବାରେ ଲାଗିଥିଲେ। ସମ୍ଭବତଃ ସେ ଜାଣିବାକୁ ଇଚ୍ଛୁକ ଥିଲେ, ତାଙ୍କର ପ୍ରସ୍ତାବ ଶୁଣି ପୁତ୍ର କ'ଣ କହିବ। ଅନେକ ବେଳଯାଏଁ ପୁତ୍ର କିଛି ନ କହିବାରୁ ପାଣିଗ୍ରାହୀ ବାବୁ ପୁଣି ପୁତ୍ରକୁ କହିଥିଲେ,- "କିରଣ, ଚୁପ୍ ରହିଲୁ ଯେ, ତୋ'ର ଇଚ୍ଛା କ'ଣ ?"

ଏଥର ତାଙ୍କର ପୁତ୍ର ତାଙ୍କୁ କହିଥିଲା,- "ବାପା, ଯୁଗ ବଦଳିଗଲାଣି। ଯେଉଁରୀତିରେ ପ୍ରତିବର୍ଷ ମୋ'ର ଜନ୍ମଦିନ ପାଳିତ ହୋଇଆସୁଛି, ସେହି ରୀତିରେ ଏବେ କେଉଁଠି ବି ଜନ୍ମଦିନ ପାଳିତ ହେଉନାହିଁ। ସୁତରାଂ, ମୋ'ର ଇଚ୍ଛା ଏୟା ଯେ, ଭଜନ ସମାରୋହ, ଠାକୁର ପୂଜନ ଆଦି ପୁରୁଣା କାଳିଆ ଅନୁଷ୍ଠାନ ଆଉ ମୋ'ର ଜନ୍ମଦିନରେ ପୁନରାବୃତ୍ତି ହେବ ନାହିଁ। ଦେଖ ବାପା, ତମେ ଯଦି ମୋ'ର ଜନ୍ମ ଦିନ ପାଳନ କରିବାକୁ ଇଚ୍ଛୁକ, ତେବେ ଗୋଟେ ବଡ଼ କ୍ୟାକ୍‌ର ଅର୍ଡ଼ର ଦିଅ, ଦି' ତିନି ଡଜନ୍ ମହମବତୀ କିଣାଇ ରଖିଥାଅ, ଆଉ ସହରର ରକି ଅର୍କେଷ୍ଟ୍ରାକୁ ନିମନ୍ତ୍ରଣ ଦିଅ ଯେ, ମୋ'ର ଜନ୍ମ ଦିନରେ ଲଘୁ ସଂଗୀତ ପରିବେଷିତ ହେବ। ଏହାଛଡ଼ା, କିଛି ପାନୀୟ ପଦାର୍ଥ ପାଇଁ ଅର୍ଡ଼ର ଦିଅ ଯେ, ମୋ'ର ସହକର୍ମୀମାନେ ମୋ'ର ଜନ୍ମଦିନରେ ଆକଣ୍ଠ ପାନ କରିବେ।"

ପୁତ୍ରର ଫରମାଇସ୍ ଶୁଣି ପାଣିଗ୍ରାହୀବାବୁ ପଥର ପାଲଟି ଯାଇଥିଲେ। ସେ ଭାବିଥିଲେ, ପୁତ୍ରଠାରେ ତା' ଜନ୍ମଦିନ ପାଳନର ପ୍ରସ୍ତାବ ଉଠାଇ ବାସ୍ତବିକ ଭୁଲ୍ କରିଛନ୍ତି। ପ୍ରତିବର୍ଷ ପରି ଏ' ବର୍ଷ ବି ସେ ପୁତ୍ରକୁ ନ ଜଣାଇତା'ର ଜନ୍ମ ଦିନ ପାଳନ କରିଥିଲେ, ଭଲ ହୋଇଥାନ୍ତା। ଏବେ ସେ ବଡ଼ ଅଡୁଆରେ ପଡ଼ି ଯାଇଥିଲେ। ପୁଅର ଫରମାଇସ୍ ମୁତାବକ ଜନ୍ମଦିନ ପାଳନ କରିବେ କି ନିଜର ପାରମ୍ପରିକ ରୀତିରେ ପାଳନ କରିବେ, ଏହି ଦ୍ୱନ୍ଦ୍ୱ ତାଙ୍କୁ ହରବର କରି ପକାଇଥିଲା। ତଥାପି, ସେ ନିଜର ନିଷ୍ପତ୍ତି ପୁତ୍ରକୁ ଜଣାଇ କହିଥିଲେ,- "ମୁଁ କିନ୍ତୁ ମୋ'ର ପାରମ୍ପରିକ ରୀତିରେ ତୋ'ର ଜନ୍ମଦିନ ପାଳନ କରିବି ! !"

- "ତେବେ ମୋ'ର ନିଷ୍ପତ୍ତି ବି ତମେ ଜାଣିଥାଅ... ମୁଁ ମୋ'ର ଇଚ୍ଛା ମୁତାବକ ମୋ'ର ଜନ୍ମ ଦିନ ପାଳନକରିବି !!" ତାଙ୍କର ପୁତ୍ର ତାଙ୍କୁ କହିଥିଲା। ଆଉ ଅଫିସ୍‌କୁ ଚାଲିଯାଇଥିଲା।

ନିର୍ଦ୍ଦିଷ୍ଟ ଦିନ ପାଣିଗ୍ରାହୀ ବାବୁଙ୍କ ପୁତ୍ରର ଜନ୍ମଦିନଟି ପାଳିତ ହୋଇଥିଲା। ପୁଣି ଗୋଟେ ଗୃହରେ ଦୁଇଟି ରୀତିରେ ଜନ୍ମଦିନଟି ପାଳିତ ହୋଇଥିଲା। ପାଣିଗ୍ରାହୀ ବାବୁ ନିଜର ପାରମ୍ପରିକ ରୀତିରେ ଜନ୍ମଦିନଟି ପାଳନ କରୁଥିଲା ବେଳେ ତାଙ୍କର ପୁତ୍ର ନିଜ ଇଚ୍ଛା ମୁତାବକ ପାଳନ କରୁଥିଲା। ଗୋଟେ ଆଡ଼େ ଅର୍କେଷ୍ଟ୍ରାର ଲଘୁ ସଂଗୀତ ସ୍ୱରର ତାଳେ ତାଳେ ଅଶ୍ଳୀଳ ଗୀତ ଶୁଣାଯାଉଥିବା ବେଳେ ଅନ୍ୟଆଡ଼େ ଶୁଣାଯାଉଥିଲା, ଖଞ୍ଜଣୀ ମାଡ଼ ସ୍ୱରର ତାଳେ ତାଳେ ପବିତ୍ର ଭୀମଭୋଇଙ୍କ ଭଜନ। ଗୋଟେ ଆଡ଼େ ମଦର ଉତ୍କଟ ଗନ୍ଧ ଛାଇ ହୋଇଯାଉଥିବା ବେଳେ ଅନ୍ୟଆଡ଼େ ପତିତ ପାବନଙ୍କ ଅନ୍ନଭୋଗର ଆଧ୍ୟାତ୍ମିକ ମହକ ଚହଟି ଯାଉଥିଲା।



ଦୈନିକ ଡାକରାର ୨୮.୮.୧୯୯୪ ଓ ୪.୯.୧୯୯୪ ସଂଖ୍ୟା ରହିବାସରୀୟ ସାହିତ୍ୟ ପୃଷ୍ଠା "ସ୍ରଷ୍ଟା"ରେ ପ୍ରକାଶିତ।

# ସତ୍ୟ ଆଜି ବି ବଞ୍ଚିଛି

ଡାକ୍ତର ସୁଧାକର ଚାହିଁଥିଲେ, ସେ ବଡ଼ ଚାକିରୀଟିଏ ପାଇପାରିଥାନ୍ତେ । ହେଲେ, ସେ ଚାକିରୀ କରିନଥିଲେ । କାରଣ, ବାଲ୍ୟକାଳରୁ ଚାହୁଁଥିଲେ, ସେ ଦୁଃଖୀ ଓ ପୀଡ଼ିତ ଲୋକଙ୍କୁ ସେବା କରିବେ । କହିବାକୁ ଗଲେ, ବାଲ୍ୟକାଳରୁ ତାଙ୍କର ପ୍ରତି ରକ୍ତ କଣିକାରେ ସେବା- ପ୍ରବୃତ୍ତିର ଅଦମ୍ୟ ପ୍ରବଣତା ପୂରି ରହିଥିଲା । ଏହାଛଡ଼ା, ତାଙ୍କର ବାପା ଓ ଜେଜେବାପା ଥିଲେ, ସ୍ୱନାମ-ଧନ୍ୟ ସ୍ୱାଧୀନତା ସଂଗ୍ରାମୀ ଓ ସମାଜସେବୀ । ତାଙ୍କ ବାପା ଓ ଜେଜେବାପାଙ୍କର ସେବା ପ୍ରବୃତ୍ତି ତାଙ୍କୁ ସେବା- ଯଜ୍ଞରେ ଝାସ ଦେବା ପାଇଁ ପ୍ରେରଣା ଯୋଗାଇଥିଲା । ଯାହା ଫଳରେ ଡାକ୍ତରୀ ଶିକ୍ଷାର ସମାପ୍ତି ପରେ ସେ ତାଙ୍କର ଗାଁରେ ଗୋଟେ କ୍ଲିନିକ୍ ପ୍ରତିଷ୍ଠା କରିଥିଲେ ।

ଡାକ୍ତର ସୁଧାକର କେବେ ଅର୍ଥପ୍ରତି ଦୁର୍ବଳତା ଦେଖାଇ ନାହାଁନ୍ତି । ଦୀର୍ଘ ୧୦ବର୍ଷର ଡାକ୍ତରୀ ପେଷାଗତ ଜୀବନରେ ଅସଂଖ୍ୟ ଦାଣ୍ଡର ଭିକାରୀ, ସାଧାରଣ ଗରିବ ଲୋକ ଓ ପ୍ରାସାଦର ଧନୀ ବ୍ୟକ୍ତି ତାଙ୍କ ନିକଟକୁ ଚିକିତ୍ସା ପାଇଁ ଆସିଛନ୍ତି । ଧନୀ ଗରିବ ନିର୍ବିଶେଷରେ ସେ ସମସ୍ତଙ୍କୁ ସମଦୃଷ୍ଟିରେ ଦେଖିଛନ୍ତି । ଆଉ ଧନୀ ଓ ଗରିବଙ୍କୁ ସମଭବରେ ଏକରକମର ଚିକିତ୍ସା ସେବା ଦେଇଛନ୍ତି । ଗରିବ ଲୋକ ବେଶି ଟଙ୍କା ଦେଇପାରିବ ନାହିଁ । ତେଣୁ, ତାକୁ ଭଲ ଚିକିତ୍ସା ସେବା ଦିଆନଯାଉ, ଏହି ଭାବନା ତାଙ୍କର ମନରେ କେବେ ବି ଉଦ୍ରେକ ହୋଇନାହିଁ । ଏହାଛଡ଼ା, ତାଙ୍କର ଚିକିତ୍ସା ରୂପକ ସେବା ପାଇଁ ସେ କାହା ନିକଟରେ ହାତ ପତାଇ ନାହାଁନ୍ତି । ଖୁସୀରେ ଯିଏ ଯାହା ଦେଲା, ତାହା ଭଗବାନଙ୍କର ପ୍ରସାଦ ଭାବି ସେ ଗ୍ରହଣ କରି ନେଇଛନ୍ତି । ଆଉ ଯିଏ ଟଙ୍କା ପଇସା ଦେଇନପାରିଲା, ତା'ଠୁଁ ସେ ଜୋର୍‌ଜବରଦସ୍ତି ଟଙ୍କା ଅସୁଲି କରି ନାହାଁନ୍ତି । ଅନ୍ୟପକ୍ଷରେ ତାକୁ ଅନ୍ୟମାନଙ୍କ ପରି ଉପଯୁକ୍ତ ଚିକିତ୍ସା-ସେବା ଦେଇଛନ୍ତି ।

ଜୀବନ-ନୌକା ଚାଳନା କରିବା ପାଇଁ ଡାକ୍ତର ସୁଧାକର କେବେ ବି ଅର୍ଥ ରୂପକ ଅସୁବିଧାର ସମ୍ମୁଖୀନ ହୋଇନାହାଁନ୍ତି । କାରଣ, ତାଙ୍କ ଦ୍ୱାରା ଯାହା ଅର୍ଥ ଅର୍ଜିତ ହୁଏ, ତାହା ତାଙ୍କ ପାଇଁ ଯଥେଷ୍ଟ । ତାଙ୍କର ମତରେ ପ୍ରତ୍ୟେକ ମଣିଷର ଅତ୍ୟାବଶ୍ୟକୀୟ ତଥା ମୌଳିକ

ଚାହିଦା ପୂରିତ ହେବା ନିତାନ୍ତ ଜରୁରୀ। ଆଉ ତାଙ୍କର ଉପାର୍ଜନରେ ତାଙ୍କର ଅତ୍ୟାବଶ୍ୟକୀୟ ତଥା ମୌଳିକ ଚାହିଦା ବିନାକଷ୍ଟରେ ପୂରିତ ହୋଇପାରୁଥିବାରୁ ସେ ଖୁବ୍ ଆନନ୍ଦିତ।

ଡାକ୍ତର ସୁଧାକରଙ୍କର ଗାଁଠୁଁ ପ୍ରାୟ ୫ କି.ମି. ଦୂରରେ ଗୋଟେ ବଡ଼ ଗାଁ ଥାଏ, ଯେଉଁଠି ରହନ୍ତି ରାଧାମୋହନ। ରାଧାମୋହନ ହେଉଛନ୍ତି, ଡାକ୍ତର ସୁଧାକରଙ୍କର ବାଲ୍ୟବନ୍ଧୁ। ରାଧାମୋହନ ଜଣେ ଧନାଢ଼୍ୟ ବ୍ୟକ୍ତି। ପାଖ ସହରରେ ବ୍ୟବସାୟ କରୁଥିଲେ ମଧ୍ୟ ରାଧାମୋହନ ନିଜ ଗାଁରେ ବାସ କରନ୍ତି। ଗାଁରେ ସେ ଗୋଟେ ବିରାଟ ସୁରମ୍ୟ କୋଠା ତୋଳାଇଛନ୍ତି। ସହରର ବ୍ୟବସାୟାଦି ଚଳାଇବା ସଙ୍ଗେ ସଙ୍ଗେ ଗାଁରେ ସେ ଚାଷବାସ ବି କରନ୍ତି।

ପ୍ରତ୍ୟହ ସନ୍ଧ୍ୟା ବେଳେ ରାଧାମୋହନ ଡାକ୍ତର ସୁଧାକରଙ୍କର କ୍ଲିନିକ୍‌କୁ ବୁଲି ଆସନ୍ତି। ସେତେବେଳେ ଡାକ୍ତର ସୁଧାକର ନିଜର ଦୈନନ୍ଦିନ କର୍ତ୍ତବ୍ୟ ସାରି ଆରାମ୍ କରୁଥାନ୍ତି। ଦୁଇବନ୍ଧୁ ରାତି ୮, ୯ ଟା ଯାଏଁ ବିଭିନ୍ନ ବିଷୟରେ ଗପସପ କରନ୍ତି। ତା'ପରେ ରାଧାମୋହନ ବନ୍ଧୁ ସୁଧାକରଙ୍କଠୁଁ ବିଦାୟ ନେଇ ତାଙ୍କର ଗାଁଆଡ଼େ ଚାଲିଯାଆନ୍ତି।

ବନ୍ଧୁ ହିସାବରେ ରାଧାମୋହନ ଡାକ୍ତର ସୁଧାକରଙ୍କ ପାଇଁ ମନ୍ଦ ବ୍ୟକ୍ତି ନୁହଁନ୍ତି। କାରଣ, ରାଧାମୋହନ ସର୍ବଦା ଡାକ୍ତର ସୁଧାକରଙ୍କର ଅବନତି ବଦଳରେ ଉନ୍ନତି କାମନା କରିଥାନ୍ତି। ରାଧାମୋହନଙ୍କର ଗୋଟେ ଗୁଣକୁ ଡାକ୍ତର ସୁଧାକର ଜମା ଭଲ ପାଆନ୍ତି ନାହିଁ। ସେହିଗୁଣଟି ହେଉଛି, ରାଧାମୋହନଙ୍କର ମାତ୍ରାଧିକ ଅର୍ଥ ଲାଳସା। ଡାକ୍ତର ସୁଧାକରଙ୍କର କ୍ଲିନିକ୍‌କୁ ଆସିଲା ମାତ୍ରେ ରାଧାମୋହନ ଅର୍ଥ ସମ୍ବନ୍ଧୀୟ ଆଲୋଚନା କରିବାକୁ ବେଶି ଭଲ ପାଆନ୍ତି। ଆଉ ନିଜ ପାଖରେ ଅଜସ୍ର ଅର୍ଥ ଥିବାରୁ ନିଜକୁ ଜଣେ ଭାଗ୍ୟବାନ ବ୍ୟକ୍ତି ବୋଲି ଅନୁଭବ କରନ୍ତି। ପୁନଶ୍ଚ, ରାଧାମୋହନ ଯୁକ୍ତି କରନ୍ତି ଯେ, ଏ'ଦୁନିଆଁରେ ସବୁ ସମସ୍ୟା- ସମାଧାନର ଚାବିକାଠି ହେଉଛି ଅର୍ଥ। ତେଣୁ, ଅର୍ଥବଳରେ ଅସମ୍ଭବକୁ ସମ୍ଭବ ବି କରାଯାଇପାରେ। ରାଧାମୋହନଙ୍କର ଅର୍ଥ ସମ୍ବନ୍ଧୀୟ ଆଲୋଚନାକୁ ଶୁଣିବା ପାଇଁ ଆଗ୍ରହ ପ୍ରକାଶ କରୁନଥିଲେ ହେଁ ଡାକ୍ତର ସୁଧାକର ବନ୍ଧୁଙ୍କର ଆତ୍ମସନ୍ତୋଷ ପାଇଁ ହୁଁ ହାଁ ମାଧ୍ୟମରେ ସମର୍ଥନ ଜଣାନ୍ତି।

ଦିନ ବିତିବାରେ ଲାଗିଥାଏ। ହଠାତ୍ ଦିନେ ଡାକ୍ତର ସୁଧାକର ଖବର ପାଇଲେ

ଯେ, ବନ୍ଧୁ ରାଧାମୋହନଙ୍କୁ ପୋଲିସ୍ ଆରେଷ୍ଟ କରି ନେଇଛି। ଏହି ଅପ୍ରତ୍ୟାଶିତ ଖବରକୁ ସୁଧାକର ଜମା ବିଶ୍ୱାସ କରିପାରିଲେ ନାହିଁ। ତେଣୁ, ସଠିକ୍ ଖବର ଜାଣିବା ପାଇଁ ବନ୍ଧୁ ରାଧାମୋହନଙ୍କ ଘରକୁ ଗଲେ। ସେଠି ସେ ଜାଣିବାକୁ ପାଇଲେ ଯେ, ପ୍ରକୃତରେ ବନ୍ଧୁ ରାଧାମୋହନଙ୍କୁ ପୋଲିସ୍ ଆରେଷ୍ଟ କରି ନେଇଛି। ଆଉ ବି ସେ ଜାଣିବାକୁ ପାଇଲେ ଯେ, ବନ୍ଧୁ ରାଧାମୋହନ ଅବୈଧ ବ୍ୟବସାୟରେ ଲିପ୍ତ ଥିଲେ ଏବଂ ଅସଦ୍ ଉପାୟରେ ଅଜସ୍ର ଅର୍ଥ ଉପାର୍ଜନ କରୁଥିଲେ। ବନ୍ଧୁଙ୍କରକୁକର୍ମ ବିଷୟରେ ଅବଗତ ହୋଇ ଡାକ୍ତର ସୁଧାକର ସେଦିନ କିଛିକ୍ଷଣ ପାଇଁ ଅବାକ୍ ହୋଇଗଲେ।

ଏହାପରେ ଅନେକ ମାସ ଯାଏଁ ନ୍ୟାୟାଳୟରେ ରାଧାମୋହନଙ୍କ ବିରୁଦ୍ଧରେ ମକଦ୍ଦମା ଚାଲିଲା। ଅଜସ୍ର ଅର୍ଥ ବ୍ୟୟ କରିବା ସତ୍ତ୍ୱେ ରାଧାମୋହନ ଦୋଷମୁକ୍ତ ହୋଇପାରିଲେ ନାହିଁ। ଶେଷରେ ସେ ଅର୍ଥଦଣ୍ଡ ସହିତ ଜେଲ ଦଣ୍ଡ ମଧ୍ୟ ପାଇଲେ।

ଯେଉଁଦିନ ବନ୍ଧୁ ରାଧାମୋହନ ନିଜର କୁକର୍ମ ପାଇଁ ଅର୍ଥ ଦଣ୍ଡ ଓ ଜେଲ ଦଣ୍ଡ ପାଇଥିବା ଖବର ଚାରିଆଡ଼େ ପ୍ରଚାରିତ ହେଲା, ସେହିଦିନ ଡାକ୍ତର ସୁଧାକର ବନ୍ଧୁଙ୍କର ଅଧଃପତନ ପାଇଁ ଅଶେଷ ଦୁଃଖ ପ୍ରକାଶ କଲେ। ଆଉ ସେହିକଥାକୁ ମନେ ପକାଇଲେ, ଯେଉଁକଥାକୁ ବନ୍ଧୁ ରାଧାମୋହନ ଯୁକ୍ତି ମାଧ୍ୟମରେ କହୁଥିଲେ... ଏ'ଦୁନିଆଁରେ ସବୁ ସମସ୍ୟା ସମାଧାନର ଚାବିକାଠି ହେଉଛି, ଅର୍ଥ। ତେଣୁ, ଅର୍ଥ ବଳରେ ଅସମ୍ଭବକୁ ସମ୍ଭବ ବି କରାଯାଇପାରେ... ଡାକ୍ତର ସୁଧାକର ଭାବିଲେ, ଆଜି ବନ୍ଧୁ ରାଧାମୋହନଙ୍କର ସେହି ଅଜସ୍ର ଅର୍ଥ କୁଆଡ଼େ ଗଲା ? ତାଙ୍କୁ ତ ତାଙ୍କର ଅଜସ୍ର ଅର୍ଥ ଦୋଷ ମୁକ୍ତ କରିପାରିଲା ନାହିଁ ? ? ତାହା ହେଲେ, ଦୁନିଆଁରେ ସତ୍ୟ ମରିନାହିଁ, ଆଜି ବି ବଞ୍ଚିଛି ! !



* ଦୈନିକ ଡାକରାର ୧୭.୫.୧୯୯୮ ରବିବାସରୀୟ ସାହିତ୍ୟ ପୃଷ୍ଠା "ସ୍ରଷ୍ଟା"ରେ ପ୍ରକାଶିତ।

# ଘଟଣା- ଦୁର୍ଘଟଣା

ସହରର ଅପେକ୍ଷାକୃତ ଛୋଟ ଅଥଚ ମୁଖ୍ୟ ରାସ୍ତାଟି ଗୋଟେ ଛୋଟିଆ ଭିଡ଼ରେ ପୂର୍ଣ୍ଣ। ଗୁଡ଼ାଏ ବ୍ୟକ୍ତି ଗୋଟେ ଗରିବ ରିକ୍ସାବାଲାକୁ ଚାରିଆଡୁ ଘେରି ଉଛବାଚରେ କ'ଣ କ'ଣ ବକି ଯାଉଛନ୍ତି। ଭିଡ଼ ମଝିରେ ଠିକ୍ ବିଚ୍‌ରାସ୍ତାରେ ନିଜ ସ୍କୁଟର ଉପରେ ବସି ଭିଡ଼ଟିକୁ ଉସ୍‌କାଉଥାନ୍ତି, ଜଣେ ଭଦ୍ରବ୍ୟକ୍ତି ଏମିତି କହି... ହେ ହେ, ରିକ୍ସାବାଲାର ବହପତ କିଛି କମ୍ ନୁହେଁ- ଚନ୍ଦ୍ର, ସୂର୍ଯ୍ୟକୁ ବି ତା'ର ପରୱା ନାହିଁ, ଧର ଧରତାକୁ, ମଣିଷକୁ ଗାଇଗୋରୁ ସମଝିଲା କି !!....

ବିଚାରା ରିକ୍ସାବାଲା, ପୂରାପୂରି କାକୁସ୍ଥ, ଦେହଟା ବରଡ଼ାପତ୍ର ପରି ଥରୁଥାଏ ତା'ର। ଆଉ ତା'ର ପାଟି ଫିଟିବା ତ ଦୂରର କଥା।

ତେବେ କଥା କ'ଣ ? ସ୍କୁଟର ଉପରେ ବସି ବିଚ୍‌ରାସ୍ତାରେ ଭଦ୍ରବ୍ୟକ୍ତି ଜଣକ ଏମିତି ଉତ୍ତେଜିତ ହୋଇ କାହିଁକି ରିକ୍ସାବାଲାଟିକୁ ଗାଳି ଦେଇଯାଉଛନ୍ତି ?

ଶୁଣନ୍ତୁ ମୁଁ କହୁଛି। କଥା କ'ଣ କି ଆଜ୍ଞା.... ଭଦ୍ରବ୍ୟକ୍ତି ଜଣକ ବିଚ୍ ରାସ୍ତାରେ ନିଜ ସ୍କୁଟର ଉପରେ ବସି ତାଙ୍କର ଜଣେ ବନ୍ଧୁଙ୍କ ସହ ଗପ ଜମାଇଥିଲେ। ରାସ୍ତାଟି ଏକେ ତ ସଂକୀର୍ଣ୍ଣ- ସେତେବେଳେ ପୁଣି ଭିଡ଼ ସମୟ। ରିକ୍ସା ବାଲାଟିଏ ଠିକ୍ ସେତେବେଳେ ରାସ୍ତା ଦେଇ ନିଜ ରିକ୍ସାକୁ ବାହି ନେବାରୁ ସ୍କୁଟର୍ ଉପରେ ବସି ଗପ ଜମାଇଥିବା ଭଦ୍ରବ୍ୟକ୍ତିଙ୍କ ଦେହକୁ ରିକ୍ସାହୁଡ୍‌ରର-ସିଟି ପବନ ଯୋଗୁଁ ଛୁଇଁ ଯାଇଥିବ... ତା'ଛଡ଼ା, ଯଦି ଦୁର୍ଘଟଣା କି ଧକ୍କା ପରି କିଛି ଗୋଟେ ଘଟିଥାନ୍ତା, ତେବେ ନିଶ୍ଚିତ ଭାବରେ ସେଥିର ଚିହ୍ନ ବର୍ଣ୍ଣ ରାସ୍ତା ଉପରେ ଦୃଷ୍ଟିଗୋଚର ହୋଇଥାନ୍ତା... ସେମିତି କିଛି କିନ୍ତୁ ହୋଇନଥିଲା।

ବାସ୍, ଏ' ସାମାନ୍ୟ ଘଟଣା ପାଇଁ ଏତେ ହୋହଲ୍ଲା, ବାକ୍‌ବିତଣ୍ଡା !! ରିକ୍ସାବାଲାଟି ଜାଣୁଥାଏ, ତା'ର ଦୋଷ ଆଦୌ ନାହିଁ। ତେବେ ଭଦ୍ରବ୍ୟକ୍ତି ଜଣକ ଯେତେବେଳେ କହୁଛନ୍ତି... ସେ ଦୋଷ କରିଛି, ସେ ନିଶ୍ଚୟ ଦୋଷୀ, ଏଥିରେ ସନ୍ଦେହର ଅବକାଶ ନାହିଁ। ସେ ବେଶି ଡରୁଥାଏ, ତା' ଚାରିପଟରେ ବ୍ୟୂହ ରଚନା

କରି ଘେରି ରହିଥିବା ଭିଡ଼କୁ। ଯଦି କିଛି ପ୍ରତିବାଦ ତା'ପକ୍ଷରୁ କରାଯାଉଛି, ତେବେ ଭଦ୍ରବ୍ୟକ୍ତିଙ୍କ ସାମାନ୍ୟ ଇଶାରାରେ ସେହି ଭିଡ଼ଟି ତା'ର ଜୀବନ- ନାଟକର ଶେଷ ଯବନିକା ଟାଣିଦେବ, ଏଥିରେ ତିଳେ ହେଲେ ସନ୍ଦେହ ନଥିଲା।

ସେ ଯାହା ହେଉ, ଦୋଷ କରି ନ ଥିବା ସତ୍ତ୍ୱେ ସେ ଆସି ଭଦ୍ରବ୍ୟକ୍ତିଙ୍କ ସାମ୍‌ନାରେ ଛିଡ଼ା ହେଲା। ଆଉ କର ଯୋଡ଼ି କହିଲା... ଆଜ୍ଞା, ମୋ'ର ଭୁଲ୍ ହୋଇଛି। ମତେ କ୍ଷମା ଦିଅ, ମୁଁ ତମ ଶରଣରେ ଗଲି। ଭଦ୍ରବ୍ୟକ୍ତି ଜଣକ ସ୍ୱମୁଛରେ ହସ୍ତ ସଂଚାଳନ ପୂର୍ବକ କହିଲେ,- ଯା'... ଯା'... ତତେ କ୍ଷମା କରିଦେଲି, ଏଠୁ ଶୀଘ୍ର ପଳା !

ତା'ପରେ ବିଚାରା ରିକ୍ସାବାଲା ପ୍ରାଣ ବିକଳରେ ନିଜ ରିକ୍ସା ଧରି ପଳାଇଲା। ଭିଡ଼ଟି ଆସ୍ତେ ଆସ୍ତେ ଅପସରି ଗଲା।

ବେଶି ଦୁଃଖ ଲାଗୁଥାଏ, ରାସ୍ତାରେ ଜମିଥିବା ଭିଡ଼ ଭିତରୁ କେହି ବି ଜଣେ ରିକ୍ସାବାଲା ସପକ୍ଷରେ ପଦିଏ କହିନଥିଲେ। ଅନ୍ୟପକ୍ଷରେ ଦୋଷ କାହାର, ସେହିଟା ବୁଝିବାକୁ ଚେଷ୍ଟା ନ କରି ଭଦ୍ରବ୍ୟକ୍ତିଙ୍କ ବ୍ୟକ୍ତିତ୍ୱର ଦୃଢ଼ ଚାପରେ ଭିଡ଼ଟି ରିକ୍ସାବାଲା ଉପରେ ଅବାଂଛିତ ଚଢ଼ାଉ କରିଥିଲା। କାହିଁକି ନା, ରିକ୍ସାବାଲାଟି ଥିଲା, ଗରିବ। ନା ତା'ଠାରେ ଥିଲା, ରୂପେଲୀ ବ୍ୟକ୍ତିତ୍ୱ, ନା ବାକ୍‌ଚାତୁରୀର ଆସ୍ପର୍ଦ୍ଧା। ସିଧାସାଦା, ମଳିମୁଣ୍ଡିଆ, ଚିରା ବସ୍ତ୍ର ପିନ୍ଧିଥିବା ମଣିଷଟିଏ।

ମୋ'ର ମନେ ପଡ଼ିଗଲା, କିଛି ବର୍ଷ ତଳର ଦୁର୍ଘଟଣାଟିଏ। ଦୁର୍ଘଟଣାଟି ଘଟିଥିଲା, ଏହି ରାସ୍ତାରେ। ଦୁର୍ଘଟଣାର ବୃତ୍ତାନ୍ତଟି ଏମିତି।

ପ୍ରତ୍ୟହ ଭଳି ସେଦିନ ଏହି ଅଣ ଓସାରିଆ ଅଥଚ ମୁଖ୍ୟ ରାସ୍ତାଟିରେ ଖୁବ୍ ଭିଡ଼ ଥିଲା। ସ୍କୁଲ, କଚେରୀ ଯିବା ବେଳ। ପାଠୁଆ ପିଲା, ଚାକିରିଆ ଲୋକ ସେତେବେଳେ ବେଶି ହରବର। ଅଣ ଓସାରିଆ ରାସ୍ତାକୁ ଦୃଷ୍ଟିରେ ରଖି ମ୍ୟୁନିସିପାଲିଟି କର୍ତ୍ତୃପକ୍ଷ ମଧ୍ୟ ରାସ୍ତାର ମଝିରେ ମଝିରେ "ସ୍ଲୋ ଡ୍ରାଇଭ୍" ଲିଖିତ ଫଳକମାନ ବାଡ଼େଇଥାନ୍ତି। ଏହି ସତର୍କତାମୂଳକ ନିବେଦନ ସତ୍ତ୍ୱେ ଐଶ୍ୱର୍ଯ୍ୟମଣ୍ଡିତ ସୁନ୍ଦର କାର୍‌ଟିଏ ଧୂଆଁକୁଣ୍ଡଳି ଛାଡ଼ି ଘଣ୍ଟାକ ୪୦, ୫୦ ମାଇଲ୍ ଗତି ସହ ରାସ୍ତାରେ ଛୁଟିଥାଏ। କାର୍ ଭିତରେ ବସିଥାନ୍ତି, ଜଣେ ରୂପେଲୀ ବ୍ୟକ୍ତିତ୍ୱପୂର୍ଣ୍ଣ ମଣିଷଟିଏ, ମୁଖରେ ତାଙ୍କ

ପ୍ରାଚୁର୍ଯ୍ୟର ହସ। ମନେ ହେଉଥିଲା, ଏତେ ଦ୍ରୁତ ଗତିରେ କାର୍ ଚଳାଇ ସେ ଯେମିତି ରାସ୍ତାର ନିୟମ ପ୍ରତି ଉପହାସ କରୁଛନ୍ତି !! ତେବେ ଜାଣି ଜାଣି ନିଆଁରେ ହାତ ଦେଲେ ଯେମିତି ଦୁର୍ଘଟଣା ଘଟେ, ସେମିତି ସେତେବେଳେ ଘଟିଥିଲା।

ସ୍କୁଲ ଯିବା ବେଳ। ଛୋଟ ଛୋଟ ପିଲା ସ୍କୁଲକୁ ଯାଉଥାନ୍ତି। ଦ୍ରୁତଗତିରେ ବଢିଯାଉଥିବା କାର୍‌ଟି ଗୋଟେ ଛୋଟ ପିଲାକୁ ଧକ୍କା ଦେଇ ଅଟକି ଗଲା। ଫଳତଃ କିଛି ଦୂରରେ କର୍ମରତ ପିଲାର ଗରିବ ବାପଟି ଦୌଡ଼ି ଆସିଲା, କାର୍ ପାଖକୁ। ଆଉ କାର୍ ଚାଳକଙ୍କୁ କହିଲା- "ଆଜ୍ଞା, ଏ'କ'ଣ କଲେ ? କଡ଼ରେ ଚାଲିଯାଉଥିବା ମୋ'ର ପିଲାଟିକୁ ଧକ୍କା ଦେଇଦେଲେ।"

କାର୍ ଭିତରେ ବସିଥିବା ଭଦ୍ରବ୍ୟକ୍ତି ଜଣକ ଉତ୍ତେଜିତ ହୋଇ କହିଲେ,- "ମୋ'ର ଦୋଷ ଯୋଗୁଁ ଏ' ଦୁର୍ଘଟଣା ଘଟିଲା ? ଆଉ ତୋ' ପିଲାର କିଛି ଦୋଷ ନାହିଁ ? ?"

ଦୁର୍ଘଟଣା ଯୋଗୁଁ ରାସ୍ତାରେ ସେତେବେଳେ ଛୋଟ ଭିଡ଼ଟିଏ ଜମି ଉଠିଥିଲା। ଭଦ୍ରବ୍ୟକ୍ତି ଜଣକ ଉକ୍ତ ଭିଡ଼କୁ ସମ୍ବୋଧନ କରି କହିଲେ,- "ଦେଖନ୍ତୁ, ଏ' ବ୍ୟକ୍ତି ଜଣକ ମୋ' ପାଇଁ ଏ' ଦୁର୍ଘଟଣାଟି ଘଟିଲା ବୋଲି କହୁଛି। ମୋ'ର କିନ୍ତୁ ଆଦୌ ଦୋଷ ନାହିଁ। ମୁଁ ମୋ'ର କାର୍ ନେଲାବେଳେ ପିଲାଟି ହଠାତ୍ ରାସ୍ତାର ଗୋଟେ କଡ଼ରୁ ଅନ୍ୟକଡ଼କୁ ଦୌଡ଼ିଗଲା। ଫଳତଃ, ଏ' ଦୁର୍ଘଟଣାଟି ଘଟିଗଲା। ଆପଣମାନେ କହନ୍ତୁ ଏଥିରେ ମୋ'ର ଦୋଷ କେଉଁଠି ?"

ଏଠାରେ ଭଦ୍ରବ୍ୟକ୍ତିଙ୍କ ପ୍ରାଚୁର୍ଯ୍ୟଭରା ବ୍ୟକ୍ତିତ୍ୱ ଭିଡ଼ ଜମାଇଥିବା ଲୋକଙ୍କୁ ମୋହିତ କଲା। ପ୍ରକୃତରେ ଦୋଷ କାହାର ନ ଠଉରାଇ ସେମାନେ ଅନ୍ଧ ଭାବରେ ଭଦ୍ର ବ୍ୟକ୍ତିଙ୍କୁ ସମର୍ଥନ କଲେ ଏବଂ ଏକ ସ୍ୱରରେ ଗରିବ ଲୋକଟିକୁ ତାଗିଦ୍ କରି କହିଲେ,- "ଆରେ ହେ... ତୋ'ର ତ ସାହସ କିଛି କମ୍ ନୁହେଁ !! ଏକେ ତ ପିଲାଟିକୁ ଜବଦ୍ କରିପାରୁନୁ, ଦ୍ୱିତୀୟରେ ଦେବତା ପରି ଭଦ୍ରବ୍ୟକ୍ତିଙ୍କୁ ଦୋଷାରୋପ କରୁଛୁ। ଯାହା ହେବାର କଥା ହୋଇ ଗଲାଣି, ଏବେ ଯା'... ପିଲାଟିକୁ ଦେଖ୍, ତା'ର କ'ଣ ହୋଇଛି।"

ତା'ପରେ ଭିଡ଼ଟି ଆପେ ଆପେ ଅପସରିଗଲା। ଭଦ୍ରବ୍ୟକ୍ତି ଜଣକ ବି ଧୂଳି

ଉଡ଼ାଇ ନିଜ କାର୍‌ରେ ବସି ଚାଲିଗଲେ ।

ରହିଗଲେ, ଗରିବ ଲୋକଟି ଓ ତା'ର ଦୁର୍ଘଟଣାଗ୍ରସ୍ତ ବେହୋସ ପିଲାଟି । କେହି ବି ଚିନ୍ତା କଲେ ନାହିଁ ଯେ, ଦୁର୍ଘଟଣାଗ୍ରସ୍ତ ପିଲାଟିର ଅବସ୍ଥା କ'ଣ ହେଲା । ସମସ୍ତେ ଚାଲିଗଲେ, ନିଜ ନିଜ ରାସ୍ତାରେ । ଅନ୍ତତଃ ସେମାନେ ମାନବିକତା ଦୃଷ୍ଟିରୁ ଉକ୍ତ ଦୁର୍ଘଟଣା ଉପରେ ଚିନ୍ତା କରିଥାନ୍ତେ । ଯଦିଓ ପିଲାଟିର ଦୋଷରୁ ଦୁର୍ଘଟଣାଟି ଘଟିଲା ବୋଲି ସେମାନେ ଭାବୁଥିଲେ, ତଥାପି, ସେମାନଙ୍କ କି କାର୍‌ଚାଳକ ଭଦ୍ରବ୍ୟକ୍ତିଙ୍କ କର୍ତ୍ତବ୍ୟ କ'ଣ ନ ଥିଲା, ଦୁର୍ଘଟଣାଗ୍ରସ୍ତ ପିଲାଟିକୁ ନେଇ ହସ୍‌ପିଟାଲ୍‌ରେ ଭର୍ତ୍ତି କରିବା ପାଇଁ ? ମାତ୍ର, କାର୍ ଭିତରେ ବସିଥିବା ଭଦ୍ରବ୍ୟକ୍ତିଙ୍କ ରୂପେଲୀ ବ୍ୟକ୍ତିତ୍ୱର ଦୃପ୍ତମୋହିନୀ ଶକ୍ତିରେ ସମସ୍ତେ ବଶୀଭୂତ ହୋଇ ଭୁଲିଗଲେ ଯେ, ଦୁର୍ଘଟଣାଗ୍ରସ୍ତ ଛୋଟ ପିଲାଟିଏ ରାସ୍ତା ଉପରେ ବେହୋସ ହୋଇ ପଡ଼ିରହିଛି ।



* ଦୈନିକ କୋଶଳର ୩୦.୭.୧୯୮୭ ପଞ୍ଚମୁଖୀ ସାହିତ୍ୟ ପୃଷ୍ଠରେ ପ୍ରକାଶିତ ।

# ଜୀବିକା ବନାମ ସାହିତ୍ୟ ସେବା

କୋଠରୀଟି ତା'ର ବିଗତ ଅନେକ ବର୍ଷର ସାଥୀ। କୋଠରୀଟି କେବେ ତିଆରି ହୋଇଥିଲା, ସେହି ବାବଦରେ ସେ ଏବେ କହିପାରିବ ନାହିଁ। ତେବେ ଏତିକି ନିଶ୍ଚୟ କହିପାରିବ ଯେ, ସେ ଯେଉଁଦିନଠୁଁ ରହିଛି, କୋଠରୀଟି ଯେମିତି ଦିଶୁଥିଲା, ସେମିତି ଦିଶୁଛି। ସମ୍ଭବତଃ ତା' ରହିବା ଆଗରୁ ବି ସେମିତି ଦିଶୁଥିଲା, ଅବା ତିଆରି ହେବା ଦିନଠୁଁ ତାହା ମରାମତିର ସ୍ୱାଦୁ ଚାଖି ନାହିଁ।

କୋଠରୀଟିର ଶୋଚନୀୟ ଅବସ୍ଥା ଦେଖିଲେ,.କେହି ହେଲେ ବି ଏଠି ରହିବେ ନାହିଁ। ପୁଣି କୋଠରୀଟି ଦିନବେଳା ବି ଅନ୍ଧାରୁଆ, ତା'ର ଝରକା ଫରକା କିଛି ନାହିଁ। ଯେମିତି ଗୋଟେ ଅନ୍ଧକୂପ। ତଥାପି, ସେ କୋଠରୀଟିକୁ ଭଡ଼ାସୂତ୍ରରେ ନେଇଥିଲା। କାହିଁକିନା, ସେ ନାଚାର ଥିଲା, ମୁଣ୍ଡ ଗୁଞ୍ଜିବା ପାଇଁ ସେତେବେଳେ ସ୍ଥାନଟିଏ ଦୟନୀୟ ଭାବରେ ଲୋଡୁଥିଲା।

ଏବେ କିନ୍ତୁ ତା'ହୃଦୟରେ କୋଠରୀ ପ୍ରତି ଏତେ ମମତା ଜାଗିଲାଣି ଯେ, ତାକୁ ରାଜଉଆସ ମିଳିଗଲେ ବି ସେ ଏହାକୁ ଛାଡ଼ିପାରିବ ନାହିଁ। ହୋଇପାରେ କୋଠରୀଟି ଅନ୍ଧାରୁଆ, ଦଦରା ଏବଂ ଯେଉଁଠି ଦିନବେଳା ଲଣ୍ଠନ ନ ଜଳାଇଲେ ଦେଖି କି ପଢ଼ି ହୁଏ ନାହିଁ। ତଥାପି, ଏହି କୋଠରୀ ସହିତ ରହିଛି, ତା'ର ଅନେକ ବର୍ଷର ମଧୁର ସମ୍ପର୍କ। କହିବାକୁ ଗଲେ, ଏହି କୋଠରୀଟି ତା'ର ଅତିପ୍ରିୟ। ଏପରିକି ଜୀବନଠୁଁ ବଳି ଅତି ଆପଣାର।

ସେ କୁଆଡ଼େ ବୋଧହୁଏ ଯାଇଥିଲା। ଏବେ ଫେରୁଛି। ପ୍ରଥମେ କୋଠରୀର ଦ୍ୱାର ଖୋଲି ସେ ଲଣ୍ଠନ ଜଳାଇଲା। ଆଲୋକିତ ହେବାରୁ କୋଠରୀର ନକ୍ସା ଝଲସି ଉଠିଲା। କୋଠରୀଟି ବେଶି ବଡ଼ ନୁହେଁ। ତେବେ ସତେ ଛୋଟ ବି ନୁହେଁ, ଯେଉଁଠି କି ଜଣକୁ ଚଳିବାରେ ଅସୁବିଧା ହେବ। ଜିନିଷ ବୋଲି ତା'ର କିଛି ନାହିଁ। ଦଉଡ଼ି ଖଟଟିଏ ପଡ଼ିଛି, କୋଠରୀର ଗୋଟେ ପଟରେ। ଆଉ ମଝିରେ ଗୋଟେ ପୁରୁଣା କାଠ ଟେବୁଲ୍, ଯାହାକୁ ଛୁଇଁ ଦେଲେ ଦୋହଲିଯାଏ। ଟେବୁଲ୍‌କୁ ଲାଗି ଭଙ୍ଗା ଚୌକିଟିଏ ପଡ଼ିଛି।

କୋଠରୀର ଗୋଟେ କାନ୍ଥକୁ ଖୋଳାଯାଇ ଆଲ୍‌ମିରାଟିଏ ତିଆରି କରାଯାଇଛି, ଯାହାର ସର୍ବମୋଟ ଦିଓଟି ଥାକରୁ ଗୋଟେ ଥାକରେ କେଇ ଖଣ୍ଡ ପୁରୁଣା ଓଡ଼ିଆ ଓ ଇଂରାଜୀ ପୁସ୍ତକ ରଖାଯାଇଛି ଏବଂ ଅନ୍ୟ ଥାକରେ ଅସଂଖ୍ୟ ପାଣ୍ଡୁଲିପି ଭର୍ତ୍ତି ହୋଇରହିଛି।

ଜଳା ହୋଇଥିବା ଲଣ୍ଠନକୁ ଆଣି 'ସେ ଟେବୁଲ୍ ଉପରେ ରଖିଲା। ହଠାତ୍ ସେତେବେଳେ ତା'ର ଦୃଷ୍ଟି ପଡ଼ିଲା, ଟେବୁଲ୍ ଉପରେ ଥୁଆ ହୋଇଥିବା ନିଯୁକ୍ତି ପତ୍ରଟି ଉପରେ। ଅନେକ ଦିନରୁ ନିଯୁକ୍ତି ପତ୍ରଟି ଟେବୁଲ୍ ଉପରେ ସେମିତି ଥୁଆ ହୋଇରହିଛି ଯେ, ସେଥିପ୍ରତି ତା'ର ଅଦୌ ଖିଆଲ ନାହିଁ। ସେ ଦିନ ପୋଷ୍ଟମ୍ୟାନ୍‌ଟି ନିଯୁକ୍ତି ପତ୍ରଟି ଦେଇ ଚାଲିଗଲା ପରେ ସେ କେବଳ ନିଯୁକ୍ତି ପତ୍ରଟିକୁ ଉପେକ୍ଷିତ ଭାବରେ ଥରେ ପଢ଼ି ଟେବୁଲ୍ ଉପରେ ପକାଇ ଦେଇଥିଲା। ସେ ନିଯୁକ୍ତି ପତ୍ରଟିକୁ ଗୋଟାଇ ଆଣି ପୁଣି ଥରେ ପଢ଼ିଲା। ଆଉ ଗଭୀର ଚିନ୍ତାରେ ମଗ୍ନ ହୋଇଗଲା।

ତାକୁ କ'ଣ ମିଳେ, କେ'ଜାଣି, ଖବର କାଗଜରେ କର୍ମ ସଂସ୍ଥାନ ବିଜ୍ଞାପନ ଦେଖିଲେ, ସେ ଚାକିରୀ ପାଇଁ ଅର୍ଜି ପଠାଇ ଦିଏ। କଲେଜ ଛାଡ଼ିବା ପରଠୁଁ ଏମିତି ଖାମ୍‌ଖିଆଲି ଭାବରେ ଚାକିରୀ ପାଇଁ ଅର୍ଜି ପଠାଇବା ତା'ର ଏକ ପ୍ରକାର ଅଭ୍ୟାସରେ ପରିଣତ ହୋଇଯାଇଛି। କିନ୍ତୁ, ବଡ଼ ଆଶ୍ଚର୍ଯ୍ୟର କଥା ଯେ, ଅନ୍ୟମାନେ ଚାକିରୀ ପାଉନଥିବା ବେଳେ ସେ ଯେତେଥର ଅର୍ଜି ପଠାଇଛି, ସେତେଥର ଚାକିରୀ ପାଇଛି। ଅବଶ୍ୟ କୌଣସି ଚାକିରୀରେ ସେ ଯୋଗଦାନ କରି ନାହିଁ। କିନ୍ତୁ, ଏଥର ନିଯୁକ୍ତି ପତ୍ରଟିକୁ ଅନାଦର କରିବା ପାଇଁ ତା'ର ମନ କାହିଁକି ମନା କରୁଛି। ଆସନ୍ତାକାଲି ଚାକିରୀରେ ଯୋଗଦାନ କରିବାର ଶେଷଦିନ। ସେ ଆସନ୍ତାକାଲି ସେ ଉକ୍ତ ଚାକିରୀରେ ଯୋଗଦାନ କରିବ କି ନାହିଁ, ସେହି ବିଷୟରେ କୌଣସି ଦୃଢ଼ ନିଷ୍ପତ୍ତି ନେଇପାରିନାହିଁ।

ସେ ଭାବିଲା, ଏହି ନିଯୁକ୍ତି ପତ୍ରଟି ବୋଧହୁଏ ଚାକିରୀରେ ଯୋଗଦାନ କରିବା ତା'ର ଅନ୍ତିମ ସୁଯୋଗ। ତାହାହେଲେ, ସେ କ'ଣ ଆସନ୍ତାକାଲି ଚାକିରୀରେ ଯୋଗଦାନ କରିବ? କିନ୍ତୁ ତା'ର ପ୍ରତିଜ୍ଞା???

ସହସା ସେତେବେଳେ ତା'ର ଗୋଟେ କଥା ମନେ ପଡ଼ିଗଲା, ଯାହା କଲେଜରେ ଛାତ୍ର ଥିବା ବେଳେ ତା'ର ସାହିତ୍ୟ ରୁଚିକୁ ଦୃଷ୍ଟିରେ ରଖି ଜଣେ ଅଧ୍ୟାପକ ତାକୁ କହିଥିଲେ,- " ଆକାଶ, ତମ ଭିତରେ ଯେଉଁ ସୃଜନ ପ୍ରତିଭା ରହିଛି, ତାହା ବଳରେ ତମେ ନିଶ୍ଚୟ ଦିନେ ଦେଶର ଜଣେ ନାମ୍‌ଜାଦା ସାହିତ୍ୟିକ ହେବ। ଜାଣ ଆକାଶ, ସୃଜନ ପ୍ରତିଭା

ବିଭୁ- ଦତ୍ତ, ସମସ୍ତଙ୍କଠାରେ ଉଦ୍ରେକ ହୁଏ ନାହିଁ। ତେଣୁ, ତମର ସାହିତ୍ୟ- ପ୍ରତିଭାକୁ ତମେ କେବେ ବି ମଉଳିବାକୁ ଦେବ ନାହିଁ ବୋଲି ମୋ'ଠାରେ ପ୍ରତିଜ୍ଞା କର।" ସେ ପ୍ରତିଜ୍ଞା କରିଥିଲା। ଆଉ ସେହି ପ୍ରତିଜ୍ଞାକୁ ଆଜିଯାଏଁ ପାଳନ କରିଆସିଛି। ହେଲେ, ସାହିତ୍ୟ- ସାଧନାରୁ ସେ କ'ଣ ପାଇଛି ? ବେକାରୀ ଯୋଗୁଁ ତା'ର ପୌରୁଷ ପ୍ରତି ଲୋକଙ୍କ ଭର୍ତ୍ସନା ଓ ଦୁଇବେଳା ପେଟପୂରା ଖାଇବା ପାଇଁ ଅହରହ କୃଚ୍ଛ ସଂଗ୍ରାମ ସହ ପାଣ୍ଡୁଲିପିର ଗୋଟେ ବିରାଟ ଅଳିଆ ସ୍ତୂପ ଛଡ଼ା ଆଉ କିଛି ପାଇନାହିଁ। ସାହିତ୍ୟ ସେବା ଓ ଜୀବନ ସଂଗ୍ରାମ ବିପରୀତମୁଖୀ ଗୋଟେ ଗୋଟେ ସରଳ ରେଖା, ଯାହାର ମିଳନ କଦାପି ସମ୍ଭବ ନୁହେଁ, ଏହି ବିଷୟ ବି ସେ ବିଗତ କେଇଟା ବର୍ଷ ଭିତରେ ବେଶ୍ ଅନୁଭବ କରିପାରିଛି। ସୁତରାଂ, ତା'ପକ୍ଷେ ବୁଦ୍ଧିମାନର କାର୍ଯ୍ୟ ହେବ- ଆଗେ ଜୀବିକା ପରେ ସାହିତ୍ୟ- ସେବା।

ସେ ଜାଣେ ନା, ଚାକିରୀ କଳାପରେ ତା' ସାହିତ୍ୟ ପ୍ରତିଭାର ଅବସ୍ଥା କ'ଣ ହେବ ? ତେବେ ଚାକିରୀ କରି ସେ ଟିକିଏ ଶାନ୍ତିରେ ତ ଜୀଇଁପାରିବ ! !



* ଦୈନିକ ଡାକରାର ୨୯.୬.୧୯୯୭ ସଂଖ୍ୟା ରବିବାସରୀୟ ସାହିତ୍ୟପୃଷ୍ଠା "ସ୍ରଷ୍ଟା"ରେ ପ୍ରକାଶିତ।

# ଫାର୍ଶ

ହୃଦୟରେ କଂପନ ଥିଲେ, ଗୋଟେ ମଣିଷ ମାନବିକତାରେ ଉଦ୍‌ବୁଦ୍ଧ ହୋଇ ଅନ୍ୟ ଗୋଟେ ମଣିଷ ପ୍ରତି ସାହାଯ୍ୟ, ସହାନୁଭୂତି ଓ ସମବେଦନା ଢାଳି ଦେଇଥାଏ। ଏହି ଦୁନିଆଁରେ ଏପରି ମଣିଷ ବି ଅଛନ୍ତି, ଯେଉଁମାନଙ୍କର ହୃଦୟରେ ତ ମାନବିକ ଦୁଃଖ ଓ ବେଦନା ବୁଝିବା ପାଇଁ କଂପନ ନ ଥାଏ। ଅଥଚ, ସେମାନେ ନିରୀହ ମଣିଷଙ୍କୁ ବିପତ୍ତି ବେଳେ ନିଜ ନିଜର ଆବିଳ ମନ୍ମଥ ଚରିତାର୍ଥ କରିବା ଅଭିକଳ୍ପେ ମିଥ୍ୟା ସାହାଯ୍ୟ, ସହାନୁଭୂତି ଓ ସମବେଦନା ରୂପକ ହୃଦୟ- କଂପନ ଦେଖାଇ ନିଃଶେଷ କରିଦେଇଥାନ୍ତି ! !

ସେହିପରି ମଣିଷଙ୍କ ମଧ୍ୟରୁ ଅମଣିଷ ଜଣେ। ଅମଣିଷର ହୃଦୟରେ ଅନ୍ୟ ପ୍ରତି ସହାନୁଭୂତି କି ସମବେଦନା ବୋଲି ଜିନିଷଟିଏ ନଥାଏ। ହେଲେ, ନିଜର ସ୍ୱାର୍ଥସାଧନ ପାଇଁ ଅନ୍ୟ ମଣିଷର ଦୁଃଖ, ବେଦନା ଓ ଦୁର୍ବଳତାକୁ ନେଇ ଉପୁରିଆ ସହାନୁଭୂତି ଓ ସମବେଦନା ଜରିଆରେ ପ୍ରଚ୍ଛନ୍ନ ଖେଳ ଖେଳିଥାଏ।

ଏହି ଅମଣିଷ ତନ୍ଦ୍ରାର ଦୁଃଖବେଳେ ମିଥ୍ୟା ସହାନୁଭୂତି ଓ ସମବେଦନା ଦେଖାଇ ତନ୍ଦ୍ରାଠୁଁ ପୂର୍ଣ୍ଣ ଫାଇଦା ଉଠାଇଛି। ସେ ତନ୍ଦ୍ରାଠାରେ ସାହାଯ୍ୟ ଓ ସହାନୁଭୂତିର ଏକ କୃତ୍ରିମ ସ୍ୱାଙ୍ଗ ପ୍ରଦର୍ଶନ କରିଛି, କେବଳ ତା'ର ବିକୃତ ମନରୁ ଉତ୍‌ଥିତ ପ୍ରାଗୈତିହାସିକ ଉଦ୍ଦୀପନା ରୂପକ ବାସନା ହଳହଳାର ପ୍ରକୋପ ଶାନ୍ତ କରିବା ପାଇଁ।

ସେଦିନ ତନ୍ଦ୍ରାର ଜୀବନରେ ଏକ ପରୀକ୍ଷାର ସମୟ। ବାପା ତା'ର ଭୀଷଣ ଜ୍ୱରରେ ଶଯ୍ୟାଶାୟୀ, ମାଛି ଖେଦିବାକୁ ତାଙ୍କର ବପୁ ନାହିଁ। ଏଣେ ଡାକ୍ତର ଦେଖାଇବା ପାଇଁ ଗୃହରେ କଉଡ଼ିଟିଏ ବି ନାହିଁ। ବାପାଙ୍କ ଦୟନୀୟ ଅବସ୍ଥା ଦେଖି ତନ୍ଦ୍ରା ଭାବିବାରେ ଲାଗିଲା... ବାପାଙ୍କ ଜ୍ୱର କମିବାର କୌଣସି ଆଶା ନାହିଁ। ତାଙ୍କୁ ଯେକୌଣସି ମତେ ଡାକ୍ତରଙ୍କ ପାଖକୁ ନେବାକୁ ପଡ଼ିବ। କିନ୍ତୁ, ଡାକ୍ତରଙ୍କ ଫିସ୍ ପାଇଁ ଟଙ୍କା କାହିଁ ? ବିନା ଟଙ୍କାରେ ତ କୌଣସି ଡାକ୍ତର ଚିକିତ୍ସା କରିବେ ନାହିଁ। ହେଲେ, ଟଙ୍କା କେଉଁଠୁ ଆଣିବ ? ଗୃହରେ ବି ଏମିତି କିଛି ଦାମିକା ଜିନିଷ ନାହିଁ ଯାହାକୁ ବିକ୍ରି କରି ଟଙ୍କା ଅଣାଯାଇପାରିବ। ତେବେ ସେ ବର୍ତ୍ତମାନ କ'ଣ କରିବ ?...

ଏହି ଚିନ୍ତାରେ ମସ୍‌ଗୁଲ୍ ରହିଥିବା ବେଳେ ତନ୍ଦ୍ରାର ହଠାତ୍ ମନେ ପଡ଼ିଲା, ଅମଣିଷ । ଅମଣିଷ ତନ୍ଦ୍ରାର ସାହିରେ ରହେ । ସାହିର ଅନେକ ଅଭାବୀ ଲୋକଙ୍କୁ ଅମଣିଷ ସାହାଯ୍ୟ କରୁଥିବା ତନ୍ଦ୍ରା ଶୁଣିଛି । ସେହି ଦୃଷ୍ଟିରୁ ଏବେ ଅମଣିଷ ପାଖକୁ ଗଲେ, ନିଶ୍ଚୟ କିଛି ଟଙ୍କା ସାହାଯ୍ୟ ମିଳିଯାଇପାରେ ଭାବି ତନ୍ଦ୍ରା ପ୍ରସ୍ଫୁଟିତ ରକ୍ତ ଗୋଲାପ ପୁଷ୍ପ ତୁଲ୍ୟ ହସି ଉଠିଲା । ତା'ପରେ ତନ୍ଦ୍ରା ଯାଇ ପହଞ୍ଚିଗଲା, ଅମଣିଷର ଗୃହରେ କିଛି ଟଙ୍କାର ସାହାଯ୍ୟ ଆଶାରେ । ଅମଣିଷ ତନ୍ଦ୍ରାର ରଙ୍ଗୀନ ବୋତଲରେ ଥିବା ରଙ୍ଗୀନ ସୁରା ପରି ରଙ୍ଗୀନ ଯୌବନକୁ ଦେଖି ତନ୍ଦ୍ରାକୁ ବହୁତ ସାହାଯ୍ୟ ଓ ସହାନୁଭୂତି ଦେଲା ଯାହା ଫଳରେ କିଛି ସପ୍ତାହ ମଧ୍ୟରେ ତନ୍ଦ୍ରାର ବାପା ରୋଗ-ମୁକ୍ତ ହେଲେ ।

ଏହାପରେ ଦିନ ବିତିବାରେ ଲାଗିଲା । ସମୟର ଗତି ସହ ତନ୍ଦ୍ରା ଓ ଅମଣିଷ ମଧ୍ୟରେ ଏକ ପ୍ରେମ ସମ୍ବନ୍ଧ ବି ବଢ଼ିବାରେ ଲାଗିଲା । ଦିନ ଆସିଲା ଦୁହେଁ ପୂରାପୂରି ଏକ ହୋଇଗଲେ ଏହି ସର୍ତ୍ତରେ ଯେ, ଅମଣିଷ ପରବର୍ତ୍ତୀ କାଳରେ ତନ୍ଦ୍ରାକୁ ବାହା ହୋଇ ପତ୍ନୀ ରୂପରେ ଗ୍ରହଣ କରିବ । ତେବେ ସେହି ପ୍ରେମ ସମ୍ବନ୍ଧ ପରା କୁଆଡ଼େ ସାତ୍ତ୍ୱିକ ନଥିଲା, ଅଭିସନ୍ଧିମୂଳକ ଥିଲା । ମାତ୍ର, ଆଗରୁ ତନ୍ଦ୍ରା ଏ' ବିଷୟ ଜାଣି ପାରି ନଥିଲା ଏବଂ ଅମଣିଷ ନିକଟରେ ନିଜର ସର୍ବସ୍ୱ ଅଜାଡ଼ି ଦେଇଥିଲା, ଖୋଲା ହୃଦୟରେ । ଆଉ ଅମଣିଷ ତନ୍ଦ୍ରାର ଅଜ୍ଞାନତାର ସୁଯୋଗ ନେଇ ତନ୍ଦ୍ରାଠୁଁ ପୂର୍ଣ୍ଣ ଫାଇଦା ଉଠାଇଥିଲା, ଏକ ଲୁଟେରା ପରି ।

ତନ୍ଦ୍ରା କିନ୍ତୁ ସେଦିନ ଜାଣିଥିଲା, ଏ' ପ୍ରେମ ସମ୍ବନ୍ଧର ପ୍ରକୃତ ସ୍ୱରୂପ ଯେଉଁଦିନ ଅମଣିଷର ସ୍ମାରକୀ ତା'ର ଜଠରରେ ଧାରଣ କରିଥିବା ଜାଣି । ସେ ଅମଣିଷଠାରେ ବିବାହ ପ୍ରସ୍ତାବ ଦେଇଥିଲା ଏବଂ ଅମଣିଷ ତା'ର ବିବାହ ପ୍ରସ୍ତାବକୁ ନାକଚ କରିଦେଇଥିଲା । ସେଦିନ ଅମଣିଷ ତନ୍ଦ୍ରାକୁ କହିଥିଲା,- "ତନ୍ଦ୍ରା, ତମେ ମୋ'ଠାରେ ଟଙ୍କା ବଦଳରେ ଶରୀର ବିକିଛ, ଏବେ କାହିଁକି ବିବାହ- ପାଲା ଲଗେଇଛ ?"

ସେଦିନ ଅମଣିଷର ଘୃଣ୍ୟ ଜବାବ ଶୁଣି ତନ୍ଦ୍ରା ନିର୍ବାକ ହୋଇ ପଡ଼ିଥିଲା । ସେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନଥିଲା ଯେ, ଅମଣିଷ ଦୁଇଟି ରୂପର ଅଧିକାରୀ, ଯିଏ ଏକ ରୂପରେ ନିଜର ଘୃଣ କାମନା ପାଇଁ ଏକ ଦୟା ଓ ପରୋପକାରର ଅବତାର ସାଜେ ଏବଂ ଅନ୍ୟ ଏକ ରୂପରେ ନିଜ ଘୃଣ୍ୟ କାମନାର ପୂର୍ଣ୍ଣତା ବାଦ୍ ଏକ ନୀଚ, ଜଘନ୍ୟ ସଇତାନ୍ ପାଲଟିଯାଏ । ସତେ ସେଦିନ ତନ୍ଦ୍ରା ଅମଣିଷକୁ କେତେ ଅନୁନୟ କରି ନ ଥିଲା । ସେହି

ଅନୁନୟ ଏତେ ବେଦନାତ୍ମକ ଥିଲା ଯେ, ତାହା ଭାଷାରେ ରୂପ ଦେବା ଅସମ୍ଭବ। ଏପରିକି ସେହି ବେଦନାତ୍ମକ ଅନୁନୟ ଶୁଣି ସ୍ଥାଣୁତ୍ୱର ପ୍ରତୀକ ପ୍ରସ୍ତରଖଣ୍ଡ ବି ତରଳ ହୋଇଯାଇଥାନ୍ତା। ମାତ୍ର, ଅମଣିଷର କଠିଣ ହୃଦୟ ତରଳ ହୋଇପାରିନଥିଲା।

ତନ୍ଦ୍ରା କାନ୍ଦ କାନ୍ଦ ହୋଇ ଅମଣିଷକୁ ସେଦିନ କହିଥିଲା,- "ଦେଖ, ଏ' ଦୁନିଆଁରେ ମୋ'ର ବୁଢ଼ା ବାପାଙ୍କ ବ୍ୟତୀତ ଆଉ କେହିନାହାଁନ୍ତି। ତମକୁ ଦୟା ଓ ପରୋପକାରର ପ୍ରତୀକ ଭାବି ମୁଁ ମୋ' ନାରୀ ଜୀବନର ସର୍ବସ୍ୱ ତମଠାରେ ସମର୍ପଣ କରିଦେଇଥିଲି, ମୋ' ଜୀବନର ସ୍ଥାୟିତ୍ୱ ପାଇଁ ହେଲେ, ତମେ ଯେ ଏଡ଼େ ବଡ଼ ଛଳନା କରିବ, ଏହା ମତେ ଜଣାନଥିଲା। ଏକ ନିରୀହା ନାରୀ ପ୍ରତି ଏ'ଭଳି ବିଶ୍ୱାସଘାତକତା କରିବା କ'ଣ ଉଚିତ ? ତମେ ମୋ' ହୃଦୟର ନିକ୍ୱଣ, କଂପନ ବୁଝିବାକୁ ଚେଷ୍ଟା କର, ମତେ ପଦଦଳିତ କରନା। ମୁଁ ବରବାଦ୍ ହୋଇଯିବି, ଅସହାୟ ହୋଇଯିବ ! !

ତନ୍ଦ୍ରାର ବେଦନାତ୍ମକ ଅଭିବ୍ୟକ୍ତି ଶୁଣି ଅମଣିଷ ଏକ ବିକଟ ହାସ୍ୟ ହସିଥିଲା। ଆଉ ତନ୍ଦ୍ରାକୁ କହିଥିଲା,- "ବୁଝିଲ ତନ୍ଦ୍ରା, ମୋ'ର ମନ ଗୁମ୍ଫା ଭିତରେ ତମଭଳି ଅନେକଙ୍କ ହୃଦୟର ନିକ୍ୱଣ ପ୍ରତିଧ୍ୱନିତ ହୋଇ କ୍ରମବିଲୁପ୍ତି ଭଜିଛି। ଆଉ ଅନେକଙ୍କର ଅରମାନ-କୁସୁମ୍ ବି ଅକାଳରେ ମଉଳି ଯାଇଛି। ତଥାପି, ମୋ'ର ହୃଦୟରେ କେବେ କଂପନ ସୃଷ୍ଟି ହୋଇନାହିଁ। ତମେ ମତେ ବୃଥା ଅନୁନୟ କରୁଛ। ଜାଣ, ତମ ସହିତ ମୁଁ ଯେଉଁ ପ୍ରେମ ରଚନା କରିଥିଲି, ତାହା କ'ଣ ଥିଲା... ଏକ ସ୍ୱାଙ୍ଗ..। ଏକ ଫାର୍ଶ... ! ! ହାଃ... ହାଃ... ହାଃ ! ! !"

ସେଦିନ ଅମଣିଷର ବିକଟ ହାସ୍ୟରେ ତନ୍ଦ୍ରାର କାନ ଏକ ପ୍ରକାର ବଧିର ହୋଇଯାଇଥିଲା। ସେ ଭାବିଥିଲା, ସେହି ଆସୁରିକ ବିକଟ ହାସ୍ୟରେ ତା'ର ସ୍ୱପ୍ନିଳ କାଚମିନାର ଭାଙ୍ଗି ଚୁରମାର୍ ହୋଇଯାଇଛି ! !

ଏହାପରେ ଦେଖାଗଲା, ତନ୍ଦ୍ରା କୁଆଡ଼େ ଚାଲିଯାଇଛି। ଥୋକାଏ ଲୋକ କୁହାବୋଲା ହେଲେ, ତନ୍ଦ୍ରା କାହାସହିତ ବିବାହ ହୋଇ କୁଆଡ଼େ ଚାଲି ଯାଇଛି। ଆଉ ଥୋକାଏ ଲୋକ କହିଲେ, ତନ୍ଦ୍ରା ବୋଧହୁଏ କୌଣସି କାରଣରୁ କେଉଁଠାରେ ଆତ୍ମହତ୍ୟା କରିଛି। ହେଲେ, ସେ କାହିଁକି କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲା, ସେଥିର ଅସଲ ଗୁମର ଚିରଦିନ ପାଇଁ ରହିଗଲା, ଅଜ୍ଞାତ।

* ଦୈନିକ କୋଶଳ- ୬.୪.୮୯ର ସାହିତ୍ୟପ୍ରଷ୍ଠ ପଞ୍ଚମୁଖୀରେ ପ୍ରକାଶିତ।

# ଗଙ୍ଗଶିଉଳି

ମୁଁ ଜାଣିଥିଲି, କୌଣସି ବ୍ୟକ୍ତିକୁ ନ ଜାଣି ନ ଚିହ୍ନି ତା'ର ଚରିତ୍ର ବିଷୟରେ ଗୋଟେ ଅସଂଲଗ୍ନ ଧାରଣାକ ରିନେବା ବୁଦ୍ଧିମାନର କାର୍ଯ୍ୟ ନୁହେଁ। ତଥାପି, ମୁଁ ସେଫାଳୀଙ୍କୁ ନ ଜାଣି ନ ଚିହ୍ନି ତାଙ୍କ ଚରିତ୍ର ବିଷୟରେ ଗୋଟେ ଅସଂଲଗ୍ନ ଧାରଣା କରି ନେଇଥିଲି। କାରଣ, ଶେଫାଳୀ ବାସ କରୁଥିବା ସାହିର ବାସିନ୍ଦାମାନଙ୍କ ମଧ୍ୟରେ ତାଙ୍କ ଚରିତ୍ର ବିଷୟରେ ଅସଂଲଗ୍ନ ଗଳ୍ପଗୁଡ଼ିକ ଯୋଗୁଁ ହିଁ ମୁଁ ଶେଫାଳୀଙ୍କ ଚରିତ୍ର ବିଷୟରେ ଗୋଟେ ଅସଂଲଗ୍ନ ଧାରଣା କରିନେଇଥିଲି। କିନ୍ତୁ, ଯେଉଁଦିନ ତାଙ୍କୁ ଭଲ ଭାବରେ ଜାଣିବାର ସୁଯୋଗ ମତେ ମିଳିଥିଲା, ସେହିଦିନ ତାଙ୍କ ଚରିତ୍ର ବିଷୟରେ ମୋ'ର ମନ ଭିତରେ ଯେଉଁ ଅସଂଲଗ୍ନ ଧାରଣାଟିଏ ସୃଷ୍ଟି ହୋଇଥିଲା, ତାହା ଆପଣାଛାଏଁ ଉଭେଇ ଯାଇଥିଲା ଏବଂ ମୋ'ର ମନ ଅବଶୋଷ ଅନଳରେ ଅନେକ ଦିନ ପର୍ଯ୍ୟନ୍ତ ଛଟପଟ ହୋଇଥିଲା। ଶେଫାଳୀଙ୍କ ଚରିତ୍ର ବିଷୟରେ ଯେଉଁ ଅସଂଲଗ୍ନ ଗଳ୍ପମାନ ତାଙ୍କ ସାହିର ବାସିନ୍ଦାମାନଙ୍କ ମଧ୍ୟରେ ପ୍ରଚଳିତ ହୋଇଥିଲା, ତହିଁର ମୁଖ୍ୟ କାରଣ ଥିଲା ଯେ, ସେ ଜଣେ ସ୍ୱାଧୀନ ମନୋବୃତ୍ତିର ମହିଳା।

ସେ ଯାହାହେଉ, ଶେଫାଳୀ ହେଉଛନ୍ତି, ଜଣେ ପୂର୍ବତନ ଜମିଦାରଙ୍କ ଏକ ମାତ୍ର ଅଲିଅଳ ଝିଅ। ତାଙ୍କର ପିତା ଥିଲେ, ଖୁବ୍ ଉଦାରପନ୍ଥୀ। ତାଙ୍କ ପିତାଙ୍କର ପ୍ରେରଣା ଯୋଗୁଁ ସେ ଏ'ଯୁଗର ସର୍ବୋଚ୍ଚ ଶିକ୍ଷା ଲାଭ କରିପାରିଛନ୍ତି। ତାଙ୍କର ପିତା ତାଙ୍କ ମନ ଲାଖି ଗୋଟେ ଉଚ୍ଚଶିକ୍ଷିତ ଯୁବକଙ୍କ ହାତରେ ତାଙ୍କୁ ଅର୍ପଣ କରିଥିଲେ। ଏପରିକି ଜ୍ୱାଇଁ ବିଦେଶକୁ ଅଧ୍ୟୟନ କରିଯିବେ ବୋଲି ତାଙ୍କର ପିତା ନିଜର ଗୋଟେ ବଡ଼ କୋଠା ଓ ଜମିବାଡ଼ି ବିକ୍ରୟ କରିଦେଇଥିଲେ। ହେଲେ, ଲାଭ କ'ଣ ହୋଇଥିଲା ? ଜ୍ୱାଇଁ ବିଦେଶରୁ ଶିକ୍ଷାସମାପ୍ତ କରି ଯେତେବେଳେ ନିଜର ମାତୃଭୂମିକୁ ଫେରିଥିଲେ, ସେତେବେଳେ ସାଙ୍ଗରେ ଆଣିଥିଲେ, ଗୋଟେ ବିଦେଶିନୀକୁ। ଏହି ବିଷୟ ଜାଣି ଶେଫାଳୀଙ୍କର ପିତା ଦୁଃଖର ଦାରୁଣ ଆଘାତରେ ଚିରଦିନ ପାଇଁ ଆଖିବୁଜି ଦେଇଥିଲେ। ଆଉ ଶେଫାଳୀଙ୍କୁ ଶାଶୁଘର ଲୋକେ ଗୃହରୁ ତଡ଼ି ଦେଇଥିଲେ।

ଶାଶୁଗୃହରୁ ବିତାଡ଼ିତ ହେବା ପରେ ଶେଫାଳୀ ଏ' ଦୁନିଆଁରେ ଅସହାୟା ହୋଇପଡ଼ିଥିଲେ। ତାଙ୍କର ଚରମ ଦୁଃଖ ବେଳେ ତାଙ୍କୁ ସମବେଦନା ଓ ସାନ୍ତ୍ୱନା ଜଣାଇବା ପାଇଁ ତାଙ୍କ ନିକଟରେ କେହି ନଥିଲେ। ଏପରିକି ତାଙ୍କ ପାଖରେ ପଇସାଟିଏ ବି ନଥିଲା। ତାଙ୍କ ପିତାଙ୍କର ସମସ୍ତ ସ୍ଥାବର

ଅସାବର ସଂପତ୍ତି ଙ୍କ୍ୱାଇଙ୍କ ଅଧ୍ୟୟନରେ ଆଗରୁ ସମାପ୍ତ ହୋଇଯାଇଥିଲା । ଏ'ଭଳି ପରିସ୍ଥିତିରେ ବି ସେ ନିଜର ମାନସିକ ଭାରସାମ୍ୟ ହରାଇ ନଥିଲେ ଏବଂ ପରିସ୍ଥିତି ସହିତ ଯୁଝିବା ପାଇଁ ବଦ୍ଧପରିକର ହୋଇଥିଲେ । ଏହାଛଡ଼ା, ସେ ତାଙ୍କ ସ୍ୱାମୀଙ୍କ ପ୍ରତି ଆଦୌ ପ୍ରତି ହଂସା- ପରାୟଣା ହୋଇନଥିଲେ । ସେ ଚାହିଁଥିଲେ, ତାଙ୍କ ସ୍ୱାମୀଙ୍କୁ ନ୍ୟାୟାଳୟର କାଠଗଡ଼ାରେ ଛିଡ଼ା କରାଇପାରିଥାନ୍ତେ ଏବଂ ନିଜର ହକ୍ ଦାବୀ ହାସଲ କରିପାରିଥାନ୍ତେ । ତେବେ ସେ ଜାଣୁଥିଲେ, ଜୋରଜବରଦସ୍ତି ସହାୟତାରେ ନିଜର ହକ୍ ଦାବୀ ହାସଲ କଲେ, ତାଙ୍କର ଦାମ୍ପତ୍ୟ ଜୀବନରେ ଶାନ୍ତି ପାଇପାରିବେ ନାହିଁ । ତେଣୁ, ସେ ତାଙ୍କ ସ୍ୱାମୀଙ୍କ ବିରୁଦ୍ଧରେ ପ୍ରତି ହିଂସାମୂଳକ ପଦକ୍ଷେପ ନ ନେଇ ତାଙ୍କ ସ୍ୱାମୀଙ୍କୁ ମାଫ୍ କରି ଦେଇଥିଲେ । ଏହାଛଡ଼ା, ସେ ଚାହୁଁଥିଲେ, ପୁରୁଷ ଉପରେ ନିର୍ଭର କରି ବଞ୍ଚିବା ଅପେକ୍ଷା ନିଜେ ଆତ୍ମ- ନିର୍ଭରଶୀଳ ହେବା । ସମାଜରେ ନାରୀ ଅବଳା ଏବଂ ପୁରୁଷ ବିନା ତିଷ୍ଠି ପାରିବ ନାହିଁ ବୋଲି ଯେଉଁ ଗୋଟେ ଧାରଣା କେଉଁ ଅନାଦିକାଳରୁ ରହିଆସିଛି, ସେହିଟାକୁ ମିଥ୍ୟା ପ୍ରମାଣିତ କରିବା ପାଇଁ ବି ସେ ନିଷ୍ପତ୍ତି ନେଇଥିଲେ ।

ଏହାପରେ ସେ ଚାକିରୀର ଅନୁସନ୍ଧାନରେ ବ୍ୟାପ୍ତ ହୋଇଯାଇଥିଲେ । ସେ ତ ଗୋଟେ ଉଚ୍ଚଶିକ୍ଷିତା ନାରୀ । ତେଣୁ, ତାଙ୍କୁ ଖୁବ୍ ଶୀଘ୍ର ଗୋଟେ ଭଲ ଚାକିରୀ ମିଳିଯାଇଥିଲା । ଏବେ ସେ ନିଜ ଗୋଡ଼ରେ ନିଜେ ଛିଡ଼ା ହୋଇପାରିଛନ୍ତି ଏବଂ ପ୍ରମାଣିତ କରିଦେଇଛନ୍ତି ଯେ, ନାରୀ, କଦାପି ଅବଳା ଓ ଅସହାୟା ନୁହେଁ । ଅନ୍ୟର ସାହାଯ୍ୟ ବିନା ମଧ୍ୟ ସେ ତିଷ୍ଠି ପାରିବ ।

ଆମ ସମାଜର ଲୋକମାନେ କିନ୍ତୁ ଶେଫାଳୀଙ୍କ ଭଳି ନାରୀକୁ କୁଚକ୍ଷୁରେ ଦେଖନ୍ତି ଏବଂ ତା'ର ଚରିତ୍ର ବିଷୟରେ ନାନା ପ୍ରକାର କପୋଳକଳ୍ପିତ ଗପ ପ୍ରଚାର କରନ୍ତି । ଦେଖିବାକୁ ଗଲେ, ଏ'ଭଳି ନାରୀ ଆମ ପ୍ରେରଣାର ଉତ୍ସ ହେବା ଉଚିତ, ଆମ ସହାନୁଭୂତିର ପାତ୍ରୀ ହେବା ଆବଶ୍ୟକ ।

ଶେଫାଳୀ କିନ୍ତୁ ଲୋକମାନଙ୍କ ଅପ୍ରଚାର ଓ ନିନ୍ଦାକୁ ଭ୍ରୂକ୍ଷେପ କରନ୍ତି ନହିଁ । ଆଉ ସମାଜ ପ୍ରତି ଥିବା ନିଜର କର୍ତ୍ତବ୍ୟ ସୁଚାରୁ ରୂପେ ପାଳନ କରିଯାଆନ୍ତି । ସେ ଗୋଟେ ସର୍ବଂସହା ନାରୀ ଭଳି ଭାବନ୍ତି, ମଣିଷ ଜୀବନ ଗଙ୍ଗଶିଉଳି ଭଳି କ୍ଷଣସ୍ଥାୟୀ । ସେହି କ୍ଷଣସ୍ଥାୟୀ ଜୀବନରେ ଲୋକମାନଙ୍କ ସବୁ ଅପବାଦ ଓ ନିନ୍ଦାକୁ ଭ୍ରୂକ୍ଷେପ ନ କରି ଦୁନିଆଁରେ ସେବାରୂପୀ ସୁରଭି ମଣିଷ ଚହଟାଇ ଦେବା ଉଚିତ ।

* ସିଦ୍ଧେଶ୍ୱରୀ ଧର୍ମସଂସଦ, ସମ୍ବଲପୁରର ମୁଖପତ୍ର ସିଦ୍ଧିପ୍ରଜ୍ଞା-୧୯୯୫-୯୬ରେ ପ୍ରକାଶିତ ।

# ଅସ୍ତିତ୍ୱ

କୌଣସି ଏକ ନିର୍ଦ୍ଦିଷ୍ଟ ଦିନ ମାନସ ବିନା କାରଣରେ ପତ୍ନୀ ସ୍ମୃତିର ଆଖିରେ ଲୁହ ଦେଖି ବିଚଳିତ ହୋଇଉଠିଲା । ସ୍ମୃତିର ଆଖିରୁ ଅହରହ ଲୁହ ନିର୍ଗତ ହେଉଥାଏ । ମାନସର ମନେ ହେଲା, ପତ୍ନୀର ଲୁହଧାରା ଯେପରି ଏକ ବର୍ଷଣମୁଖୀ ମେଘପରି କୌଣସି ବାଧାବିଘ୍ନ ନ ମାନି ବର୍ଷି ଚାଲିଛି ! !

ମାନସ ପତ୍ନୀକୁ ପଚାରିଲା,- "ତମେ କାନ୍ଦୁଛ ସ୍ମୃତି ?"

ସ୍ମୃତି ସାମାନ୍ୟ ଚଢ଼ାଗଳାରେ ମାନସକୁ କହିଲା, "କାନ୍ଦିବି ନାହିଁ ଯେ କ'ଣ ହସିବି ! !"

- "ଚିଡୁଛ କାହିଁକି ? ତମର କ'ଣ ହେଲା, କୁହ ?" ମାନସ ବି ଚଢ଼ାଗଳାରେ ସ୍ମୃତିକୁ କହିଲା । ଫଳତଃ, ସ୍ମୃତି ଆଖିର ଲୁହ ପୋଛି ମାନସକୁ କହିଲା,- "ଏ'ଦୁନିଆଁରେ ସମସ୍ତଙ୍କର ଅସ୍ତିତ୍ୱ ଅଛି । ହେଲେ, ଆମ ଦୁହିଁଙ୍କର ଅସ୍ତିତ୍ୱ ? ? ?"

ସ୍ମୃତିର ଅଭିବ୍ୟକ୍ତି ଶୁଣି ମାନସକୁ ହସ ମାଡ଼ିଲା । ସ୍ମୃତିର ଅଭିବ୍ୟକ୍ତିରେ ମାନସ "ଅସ୍ତିତ୍ୱ" ଶବ୍ଦଟି ଶୁଣିଥିଲା । ସେ ଭାବିଲା, ଏହି ବିରାଟ ଦୁନିଆଁରେ କୋଟି କୋଟି ମଣିଷ ଅଛନ୍ତି ଏବଂ ସେହି କୋଟି କୋଟି ମଣିଷଙ୍କ ମଧ୍ୟରୁ ଦୁଇଟି ସାଧାରଣ ମଣିଷର ଅସ୍ତିତ୍ୱକୁ ନେଇ ଲୁହ ଗଡ଼ାଇବା କି ଆବଶ୍ୟକତା ଅଛି ? ତା'ଛଡ଼ା, ପ୍ରାୟ ଗୋଟେ ବର୍ଷତଳର କଥା... ଦୁଇଟି ଭିନ୍ନ ଭିନ୍ନ ସଂପ୍ରଦାୟର ଯୁବକ ଓ ଯୁବତୀ ମାନସ ଓ ସ୍ମୃତି ପ୍ରେମ ବିବାହ ବନ୍ଧନରେ ଆବଦ୍ଧ ହୋଇଥିଲେ, ଅନ୍ୟ ଏକ ଭିନ୍ନ ସଂପ୍ରଦାୟର ଧର୍ମୀୟ ରୀତିରେ । ସେତେବେଳେ ମାନସ ଓ ସ୍ମୃତି ସେମାନଙ୍କ ଅସ୍ତିତ୍ୱ ଖୋଜିବାକୁ ଚେଷ୍ଟା କରିଥିଲେ । ତେବେ ଶତ ପ୍ରଚେଷ୍ଟା ସତ୍ତ୍ୱେ ସେ ଦୁହେଁ ସେମାନଙ୍କ ଅସ୍ତିତ୍ୱର ଏକ ନିର୍ଦ୍ଦିଷ୍ଟ ସ୍ୱରୂପକୁ ଆବିଷ୍କାର କରିପାରିନଥିଲେ । ଶେଷରେ ଅବଶ୍ୟ ସେ ଦୁହେଁ ହଠାତ୍ ଦିନେ ଏକ ନିଛାଟିଆ ଛକରେ ସେମାନଙ୍କ ଅସ୍ତିତ୍ୱର ଶବକୁ ପାଇଥିଲେ । ପୁଣି ଶବଟି ଛକର ଏପରି ଏକ ସ୍ଥାନରେ ପଡ଼ିଥିଲା ଯେଉଁଠି ମୁହାଁମୁହିଁ ଗୋଟେ ମନ୍ଦିର, ଗୋଟେ ଗୀର୍ଜା ଓ ଗୋଟେ ମସ୍‌ଜିଦ୍ ଛିଡ଼ା ହୋଇଥିଲେ । ସେହି ନିଛାଟିଆ

ଛକରେ ସେ ଦୁହେଁ ସେମାନଙ୍କ ଅସ୍ତିତ୍ୱର ଶବକୁ ପୋଡ଼ି ଦେଇଥିଲେ। ଆଉ ଘୋଷଣା କରିଥିଲେ- ସେ ଦୁହେଁ ଜାତି- ଧର୍ମଗତ ଅସ୍ତିତ୍ୱ ବିହୀନ ଦୁଇଟି ମଣିଷ ମାତ୍ର ! !....

ମାନସ ଦେଖିଲା, ସ୍ମୃତି ଆଉ କାନ୍ଦୁ ନାହିଁ। ମାନସ ସ୍ମୃତିକୁ କହିଲା,- "ସ୍ମୃତି ମନେ ପକାଅ, ପ୍ରାୟ ଗୋଟେ ବର୍ଷ ତଳେ ଆମେ ଦୁହେଁ ଆମ ଅସ୍ତିତ୍ୱର ଶବକୁ ପୋଡ଼ି ଦେଇଥିଲେ। ଆଉ ଘୋଷଣା କରିଥିଲେ, ଆମେ ଦୁହେଁ ଜାତି- ଧର୍ମଗତ ଅସ୍ତିତ୍ୱ ବିହୀନ ଦୁଇଟି ମଣିଷ ମାତ୍ର। ତଥାପି, ତମେ ମୂଲ୍ୟହୀନ ଅସ୍ତିତ୍ୱକୁ ନେଇ କାନ୍ଦୁଛ ?"

ସ୍ମୃତି କହିଲା,- "ମୋ'ର ଭୁଲ୍ ହୋଇଗଲା ମାନସ, ଅସ୍ତିତ୍ୱ ବିଷୟ ଆଉ କେବେ ଉଠାଇବି ନାହିଁ।"



* ଦୈନିକ ଡାକରାର ୨୧.୨.୧୯୮୮ ସଂଖ୍ୟାରେ ପ୍ରକାଶିତ।

# ଛକ

ଆମେ ଦୁହେଁ ଆମ ସମ୍ବନ୍ଧର ଛକରୁ ଯେଉଁ ରାସ୍ତାଟି ସାମାଜିକ ସ୍ୱୀକୃତି ପାଇଁ ଉଦ୍ଦିଷ୍ଟ ନ ଥିଲା, ସେହି ରାସ୍ତାରେ ଯାଇଥିଲେ, ସମ୍ଭବତଃ ତା'ର ଅବସ୍ଥା ଆଜି ଏପରି ଦୟନୀୟ ତଥା କରୁଣ ହୋଇନଥାନ୍ତା।

ଅତୀତରେ ସେ କହିଥିଲା,- "ଅମର, ମୁଁ ତମ ଓ ମୋ' ସମ୍ବନ୍ଧର ସାମାଜିକ ସ୍ୱୀକୃତି ଚାହେଁ। ମୁଁ ଚାହେଁ, ସମାଜରେ ଅସଂଖ୍ୟ ଦମ୍ପତି ଯେପରି ସାମାଜିକ ସୁରକ୍ଷା ଓ ସୁବିଧା ସହିତ ଚଳ-ପ୍ରଚଳ କରନ୍ତି, ସେପରି ଆମେ ଦୁହେଁ ବି ଚଳ-ପ୍ରଚଳ କରିବା।"

ମୁଁ କିନ୍ତୁ ତାକୁ ବୁଝାଇ କହିଥିଲି,- "ପ୍ରୀତି, ଆମର ଏ' ସମାଜ କ'ଣ ଆମର ପୂତ ସମ୍ବନ୍ଧକୁ ସ୍ୱୀକୃତି ଦେବ ବୋଲି ତମେ ଭାବୁଛ? ତମେ ଯଦି ଭାବୁଥାଅ, ଏ' ସମାଜ ଆମର ପୂତ ସମ୍ବନ୍ଧକୁ ସ୍ୱୀକୃତି ଦେବ ବୋଲି, ତେବେ ମୁଁ କହିବି, ତମର ଭାବନା କେବଳ ମିଥ୍ୟା ଭାବନା ଛଡ଼ା କିଛି ନୁହେଁ। ଜାଣ ପ୍ରୀତି, ଆମର ଏ' ସମାଜ ସେତେ ଉଦାର ନୁହେଁ- ଆମ ଦୁହିଁଙ୍କର ପୂତ ସମ୍ବନ୍ଧକୁ କଦାପି ସ୍ୱୀକୃତି ଦେଇପାରିବ ନାହିଁ। ସେଥିପାଇଁ ମୁଁ କହୁଛି, ଚାଲ, ଆମେ ଦୁହେଁ ଆମ ସମ୍ବନ୍ଧର ଛକରୁ ଯେଉଁ ରାସ୍ତାଟି ସାମାଜିକ ସ୍ୱୀକୃତି ପାଇଁ ଉଦ୍ଦିଷ୍ଟ ନୁହେଁ, ସେହି ରାସ୍ତାରେ ମାଡ଼ି ଯାଇ ଆମର ଲକ୍ଷ୍ୟସ୍ଥଳୀରେ ଉପନୀତ ହେବା।"

ମାତ୍ର, ସେ ମୋ'ର ଯୁକ୍ତିକୁ ଗ୍ରହଣ କରିନଥିଲା।

କେଉଁ ଗୋଧୂଳିର ସ୍ୱର୍ଣ୍ଣିଳ ମୁହୂର୍ତ୍ତରେ ପ୍ରୀତି ସହିତ ମୋ'ର ସାକ୍ଷାତ ହୋଇଥିଲା, ତାହା ଯଦିଓ ମୁଁ ସ୍ମରଣ ରଖିପାରିନାହିଁ, ତଥାପି ତା' ସହିତ ଥିବା ଦୀର୍ଘଦିନର ସମ୍ବନ୍ଧରୂପୀ ମଧୁସ୍ମୃତିକୁ ଆଜି ବି ବିସ୍ମୃତ ହୋଇପାରିନାହିଁ, ଆଜି ବି ସେହି ମଧୁ ସ୍ମୃତି ନିରୋଳା ସମୟରେ ମତେ ଶାନ୍ତିର ଖୋରାକ ଯୋଗାଏ!!

ଯେଉଁ ସମୟରେ ତା' ସହିତ ମୋ'ର ପରିଚୟ ହୋଇଥିଲା, ସେତେବେଳେ ତା'ର ମନ ବୀଣାରେ ଏକ ଅବ୍ୟକ୍ତ ରାଗିଣୀ ଅସ୍ପଷ୍ଟ ଭାବରେ ସ୍ୱର ତୋଳୁଥିଲା। ସେ କିନ୍ତୁ ମୋ'ର ସାହାରା ପାଇ ତା' ମନ ବୀଣାର ବେସୁରା ଅବ୍ୟକ୍ତ ରାଗିଣୀ ସ୍ପଷ୍ଟ ଭାବରେ ବ୍ୟକ୍ତ କରିପାରିଥିଲା। ମୁଁ ତା'ର ଜୀବନ କାହାଣୀ ଓ ଯନ୍ତ୍ରଣା ଜାଣି ଅନୁଭବ କରିଥିଲି- ସେ

କେବଳ ଦୁଃଖଯନ୍ତ୍ରଣା ସହ୍ୟକାରିଣୀ ଏକ ନାରୀ ନୁହେଁ, ଏକ ଆଦର୍ଶ ନାରୀ ବି।

ତା'ପରେ ଆମ ଦୁହିଁଙ୍କର ପରିଚୟ ପ୍ରେମରେ ପରିଣତ ହୋଇଯାଇଥିଲା। ସେ ଚାହିଁଥିଲା, ଆମର ପ୍ରେମ ରୂପୀ ସମ୍ବନ୍ଧର ସାମାଜିକ ସ୍ୱୀକୃତି। ସେତେବେଳେ ଆମେ ଦୁହେଁ ଆମ ସମ୍ବନ୍ଧର ଛକରୁ ଦୁଇଟି ମାର୍ଗ ପାଇଥିଲୁ। ଗୋଟିଏ ମାର୍ଗ ଥିଲା, ସାମାଜିକ ସ୍ୱୀକୃତି ଅଭିମୁଖୀ ଏବଂ ଅନ୍ୟଟି ପୂର୍ବଟିର ବିପରୀତ। ମାତ୍ର, ବାରମ୍ବାର ବାରଣ ସତ୍ତ୍ୱେ ସେ ସାମାଜିକ ସ୍ୱୀକୃତି ପାଇଁ ଉଦ୍ଦିଷ୍ଟ ରାସ୍ତାଟି ଅନୁସରଣ କରିବା ପାଇଁ ଅଡ଼ି ବସିଥିଲା। ଆମେ ଦୁହେଁ ପ୍ରୀତିର ଇଚ୍ଛିତ ରାସ୍ତାରେ ଚାଲି ସାମାଜିକ ବାଧା ବିଘ୍ନକୁ ପାରି କରିବା ପାଇଁ ଚେଷ୍ଟା ବି କରିଥିଲୁ। ହେଲେ, ଆମେ ଦୁହେଁ ସମାଜ ନିକଟରେ ହାର୍ ମାନିଥିଲୁ। ଆଉ ସେ ମୋ'ଠୁଁ ଦୂରେଇ ଯାଇଥିଲା।

ଅନେକ ବର୍ଷ ପରେ ସେଦିନ ହଠାତ୍ ତା'ସହିତ ମୋ'ର ସାକ୍ଷାତ ହୋଇଗଲା। ପ୍ରଥମତଃ ମୁଁ ତା'ର ଦୟନୀୟ ଅବସ୍ଥା ଦେଖି ତାକୁ ଚିହ୍ନି ପାରିନଥିଲି। ହେଲେ, କ୍ଷଣିଏ କାଳ ତାକୁ ଭଲ କରି ନିରୀକ୍ଷଣ କଲା ପରେ ମୁଁ ସନ୍ଦେହମୁକ୍ତ ହେଲି ଯେ, ସେ ପ୍ରୀତି ବ୍ୟତୀତ ଆଉ କେହି ନୁହେଁ। ତେଣୁ, ମୁଁ ତା' ନିକଟକୁ ଯାଇ କହିଲି,- "ହେ... ମତେ ଚିହ୍ନିପାରୁଛ ?... ମୁଁ... ମୁଁ...।

ମୋର କଥା ଅଧାରେ ରହିଗଲା, ତା'ର ଚକ୍ଷୁ ଯୁଗଳରୁ ଝରଝର ଅଶ୍ରୁ ନିପାତନରେ। ସେ ବୋଧେ ମତେ ଚିହ୍ନି ପାରିଲା। ଟିକିଏ ପରେ ସେ ମତେ କହିଲା,- "ହଁ, ଚିହ୍ନୁଛି।"

ମୁଁ କହିଲି,- "ତମର ଏ'ଭଳି ଅବସ୍ଥା କେମିତି ହେଲା ? ଆଉ ତମର ବାହାସାହା ହେଲାଣି କି ନାହିଁ ? ?"

ମୋ'ର ପ୍ରଶ୍ନ ଶୁଣି ସେ ଯେମିତି ଏକ ଅବ୍ୟକ୍ତ ବେଦନା ଅନୁଭବ କଲା। ମାତ୍ର, ପରମୁହୂର୍ତ୍ତରେ ସ୍ୱବେଦନାକୁ ଚାପି ନିଜ ବିଷୟରେ କହିଲା। ତା'ର କଥାରୁ ମୁଁ ଯାହା ଅନୁମାନ କଲି, ତାହା ହେଉଛି... ସେ ବାହା ହୋଇଛି। ମାତ୍ର, ତା'ର ବୈବାହିକ ଜୀବନ ଅଶାନ୍ତ ଓ ଯନ୍ତ୍ରଣାଦାୟକ। ତା'ର ସ୍ୱାମୀ ବେପରୁଆ, ବେଖିଆଲି ମଣିଷଟିଏ। ଯାହାଫଳରେ ତାକୁ ତିଳତିଳ କରି ଯନ୍ତ୍ରଣା ପ୍ରତିଦିନ ସହନ କରିବାକୁ ପଡୁଛି।

* ଦୈନିକ ଡାକରାର ୨୨.୪.୧୯୮୮ ସଂଖ୍ୟାରେ ପ୍ରକାଶିତ।

# ସେ କାଳ ଆଉ କେତେଦୂର ? ? ?

"ଆଃ ! ଖୁବ୍ ଶୋଷ... ! !"

ଏ' ଶୋଷ ଶେଷକାନ୍ତର। ପୁନଶ୍ଚ, ଏ'ଶୋଷ ତା' ଅଭିଳାଷର ଶୋଷ ନୁହେଁ କି ଦେହର ଶୋଷ ନୁହେଁ ଅବା ବିଳାସପୂର୍ଣ୍ଣ ଜୀବନ-ଯାପନର ଶୋଷ ନୁହେଁ, ଏ'ଶୋଷ ତା'ପେଟରେ- କେଇ ଖଣ୍ଡ ରୁଟି ଓ କିଛିଟା ଭାତର ଶୋଷ ! !

ମଣିଷର ଶୋଷ ଅନନ୍ତ। କେଉଁ ଆଦିମ କାଳରୁ ଶୋଷ ମଣିଷ ସହିତ କାୟା ସଙ୍ଗେ ଛାୟା ରହିଲା ପରି ରହିଆସିଛି। ଶୋଷ ଓ ମଣିଷ ପରିପୂରକ। ଶୋଷର ମୃତ୍ୟୁ ମଣିଷର ମୃତ୍ୟୁରେ। ମଣିଷ ସବୁ ଶୋଷକୁ ଦମନ କରିପାରେ। ହେଲେ, ପେଟର ଶୋଷକୁ... ? ? ? ମଣିଷ ଦେହର ଶୋଷକୁ ନିଜ ଆତ୍ମାରେ ସ୍ପର୍ଶ ନ କରାଇ ବିଞ୍ଚିପାରେ ସତ, ଅବା ବିଳାସପୂର୍ଣ୍ଣ ଜୀବନ-ଯାପନର ବହୁ ଦୂରରେ ରହି ଶାନ୍ତିପୂର୍ଣ୍ଣ ଜୀବନ କଟାଇବାରେ ଅସୁବିଧାର ଆଭାସ ପାଇନପାରେ ସତ। ମାତ୍ର, ପେଟର ଶୋଷ... କେଇ ଖଣ୍ଡ ରୁଟି ଓ କିଛିଟା ଭାତର ସମଷ୍ଟି ବ୍ୟତିରେକେ ମଣିଷ ଆଦୌ ବଞ୍ଚିପାରିବ ନାହିଁ। କେତେକେତେ ମହାପୁରୁଷ ଓ ମୁନି ଜୀବନର ବିଭିନ୍ନ ଶୋଷ ଓ କାମନାରୁ ଦୂରେଇ ରହି ବି କେମିତି ବଞ୍ଚିରହିପାରିବ, ସେଥିର ଚିରନ୍ତର ମାର୍ଗମାନ ମଣିଷକୁ ଦର୍ଶାଇଯାଇଛନ୍ତି। କେଇଖଣ୍ଡ ରୁଟି ଓ କିଛିଟା ଭାତ ରୂପୀ ଶୋଷରୁ ସଂପୂର୍ଣ୍ଣ ଭାବରେ ଦୂରେଇ ରହି ବଞ୍ଚିବାର ଏକ ନିର୍ଦ୍ଦିଷ୍ଟ ମାର୍ଗ କିନ୍ତୁ ସେମାନେ ମଣିଷକୁ ଦେଖାଇନାହାଁନ୍ତି। ସମ୍ଭବତଃ ପେଟର ଶୋଷକୁ ପବନ ନିଃଶେଷ କରିପାରୁଥାନ୍ତା ! !

ଶେଷକାନ୍ତର ପାରିବାରିକ ଜୀବନ ସଂଘର୍ଷମୟ। ବାପା ତା'ର ରିକ୍ସାବାଲା। ଆୟ ତାଙ୍କର ଖୁବ୍ ଅଳ୍ପ। ସେହି ସ୍ୱଳ୍ପ ଆୟରେ ପରିବାରର ସର୍ବମୋଟ ତିନୋଟି ପ୍ରାଣୀ ଚଳିବା ସମ୍ଭବପର ନୁହେଁ, ଦୁଷ୍କର ବି । ଜମିବାଡ଼ି କଥା ଛାଡ଼, ସାମାନ୍ୟ ଖଣ୍ଡେ ଚାଳଘର ପରି ନିଜର ବୋଲି ତାଙ୍କର ଘରଟିଏ ବା ଥାନ୍ତା। ସେତକ ବି ନାହିଁ। ଜୀବନଟା କଟୁଛି ତାଙ୍କର ଭଡ଼ା ଘରେ। ପୁନଶ୍ଚ, ସହର ଭଳି ସ୍ଥାନରେ ଭଡ଼ାଘରଟିଏ ମିଳିବା ଯେତେ କଷ୍ଟକର, ତାହାଠୁଁ ବଳି କଷ୍ଟକର ଘରଭଡ଼ାର ଅଧିକ ପାଉଣା ଦେବା।

ଏ'ସବୁ ଅସୁବିଧା ସତ୍ତ୍ୱେ ଶେଷକାନ୍ତର ବାପା ଶେଷକାନ୍ତକୁ ଆଧୁନିକ ଯୁଗର ସର୍ବୋଚ୍ଚ

ଶିକ୍ଷା ଦେବାର ବ୍ୟବସ୍ଥା କରାଇ ପାରିଛନ୍ତି। ସେଥିପାଇଁ ଶେଷକାନ୍ତ ତା'ର ବାପାଙ୍କଠାରେ ଚିରଋଣୀ। କିନ୍ତୁ, ତା'ର ବାପା ତାଙ୍କର ଛୋଟ ବୁଦ୍ଧିରେ ତାକୁ ତାଚ୍ଛଲ୍ୟ କରି କହନ୍ତି,- "ସବୁ ତ ଭଲ। ହେଲେ, ତୁଟା ବେକାର- ଏତେ ପାଠପଢ଼ି ଲାଭ କ'ଣ ହେଲା ?"

ଶେଷକାନ୍ତ କିନ୍ତୁ ନିଜକୁ ବେକାର ବୋଲି ଭାବେ ନାହିଁ। ଯେଉଁ ଦିନ ତା'ର ବାପା ତାକୁ ବେକାର ବୋଲି ଗାଳି ଦିଅନ୍ତି, ସେଦିନ ତା'ବାପାଙ୍କର ରିକ୍ସା ଧରି ସେ କୁଆଡ଼େ ପଳାଏ ଯେ ରାତିରେ ମୁଠାଏ ଟଙ୍କା ଆଣି ତା'ର ବାପାଙ୍କ ସମ୍ମୁଖରେ ଥୋଇଦିଏ।

ଶେଷକାନ୍ତ ଚେଷ୍ଟା କଲେ, ନିଜ ପରିବାର ଅପୋଷା ରହନ୍ତା ନାହିଁ। ତଥାପି, ତା'ର ଶିକ୍ଷାଗତ ଯୋଗ୍ୟତା ଦୃଷ୍ଟିରୁ ସେ ନିଜେ ବେକାର ବୋଲି ସ୍ୱୀକାର କରେ। ଆଉ ଭାବେ, ଯଦି ଏତେ ପାଠପଢ଼ି ଶେଷରେ ରିକ୍ସା ଟାଣିବା ତା'ର ଜୀବିକା ହୁଏ, ତେବେ ଏ' ପାଠପଢ଼ାର ମୂଲ୍ୟ ବା କ'ଣ ଅଛି କି ତା'ର ବାପାଙ୍କ ଦେହ ରକ୍ତକୁ ଝାଳରେ ପରିଣତ କରିବାର ଆବଶ୍ୟକତା ବା କ'ଣ ଥିଲା ? ?

ଶେଷକାନ୍ତ ଶ୍ରମକୁ କେବେ ଅନାଦର କରିନାହିଁ- ସତ୍ୟ ପରି ଶ୍ରମର ବି ସବୁବେଳେ ଜୟଗାନ କରିଆସିଛି। ହେଲେ, ସେ ଅନୁଭବ କରେ, ଆଜି ଭାରତରେ ଶିକ୍ଷା ଶ୍ରମର ପ୍ରଶସ୍ତ ରାସ୍ତାକୁ ସଂକୀର୍ଣ୍ଣ କରିଦେଇଛି। ପରିଣାମତଃ ଆଜି ଭାରତର ବେକାରୀ ରୂପୀ ଭୂତ ମୁଣ୍ଡ ଉତ୍ତୋଳନ କରିଛି।

ସେ ପୁଣି ଭାବେ, ଭାରତରେ ବେକାରୀ ରୂପୀ ଭୂତ ସେତେବେଳେ ନିଶ୍ଚିହ୍ନ ହେବ, ଯେତେବେଳେ ସମାଜରେ ଶ୍ରମର ବୈଷମ୍ୟ ରହିବ ନାହିଁ କି ଶ୍ରମ ବିବିଧତା ଯୋଗୁଁ ସାମାଜିକ ମାନ ଓ ମର୍ଯ୍ୟାଦା କ୍ଷୁଣ୍ଣ ହେବ ନାହିଁ। ତେବେ ସେକାଳ ଆଉ କେତେଦୂର ? ? ?



* ଦୈନିକ ଡାକରାର ୨୮.୧.୧୯୮୮ ସଂଖ୍ୟାରେ ପ୍ରକାଶିତ।

# ଜୀବନ- ସଂଗ୍ରାମ

ପାର୍ଥ ସମସ୍ତଙ୍କ ମଧ୍ୟରେ ବାରି ହୋଇଯାଆନ୍ତି, ତାଙ୍କର ପ୍ରଭାବଶାଳୀ ବ୍ୟକ୍ତିତ୍ୱ ପାଇଁ। ଏହାଛଡ଼ା, ଜଣେ ଉଚ୍ଚଶିକ୍ଷିତ, ଦୟାବନ୍ତ ଓ ପ୍ରାଜ୍ଞପୁରୁଷ ହେବା ସଙ୍ଗେ ସଙ୍ଗେ ସେ ଖୁବ୍ ମଜାକିଆ ମଣିଷଟିଏ ମଧ୍ୟ। ରକ୍ତ ମାଂସଧାରୀ ଜଣେ ସାଧାରଣ ମଣିଷ ଭଳି ତାଙ୍କ ଜୀବନରେ ମଧ୍ୟ ଆଶା-ଆକାଂକ୍ଷା ଆଦି ଭରି ରହିଛି।ସେ ଜଣେ ସଂସାର ତ୍ୟାଗୀ ଯୋଗୀ ଭଳି ଜୀବନକୁ କେବେ ବି "ଜଗତ ଏକ ସ୍ୱପ୍ନ... ପୁତ୍ର କଳତ୍ରସବୁ ମିଛ ମାୟା" ଦର୍ଶନ ନିକିତିରେ ମାପନ୍ତି ନାହିଁ। ଆଶାବାଦୀ ଓ କର୍ମବାଦୀ ହୋଇଥିବାରୁ ସେ ଜୀବନକୁ ସଂଗ୍ରାମ ଭାବରେ ଗ୍ରହଣ କରନ୍ତି। ତାଙ୍କ ଜୀବନରେ ଅସୁମାରୀ ଆଶା- ଆକାଂକ୍ଷା ଚଳ-ଚଞ୍ଚଳ ହେଉଥିଲେ ହେଁ ସେଗୁଡ଼ିକ ସାମର୍ଥ୍ୟର ନୈତିକତାରେ ସୀମିତ। ମୁଠାଏ ଭାତ, ଖଣ୍ଡିଏ ବସ୍ତ୍ର ଓ ଗୋଟେ ଛୋଟିଆ ଘର ପାଇଁ ତାଙ୍କର ଜୀବନ ସଂଗ୍ରାମ!!

ପାର୍ଥଙ୍କର ଅନେକ ବନ୍ଧୁ ଅଛନ୍ତି- ଭଲ ବନ୍ଧୁ ବି ଅଛନ୍ତି, ଖରାପ ବନ୍ଧୁ ବି। ତାଙ୍କ ସହିତ ଯେ କେହି ବି ଥରେ ପରିଚିତ ହୋଇଯାଏ, ସେ ବନିଯାଏ, ତାଙ୍କର ଅନ୍ତରଙ୍ଗ ବନ୍ଧୁ।

ଥରେ ଥରେ ତାଙ୍କର ସ୍ୱଳ୍ପ ଶିକ୍ଷିତ ଅଥଚ ଧୂର୍ତ୍ତ ଧନୀ ବନ୍ଧୁମାନେ ତାଙ୍କୁ ଥଟ୍ଟା କରି କହନ୍ତି,- "ପାର୍ଥ, ତମଭଳି ଉଚ୍ଚଶିକ୍ଷିତ ହୋଇଥିଲେ, ଆମେମାନେ ଆଜି ଦେଶର ମାନ୍ୟଗଣ୍ୟ ବ୍ୟକ୍ତି ଭାବରେ ପୂଜା ପାଉଥାନ୍ତୁ। ସାଧାରଣ ଶିକ୍ଷା ପାଇ ତ ଦେଖୁଛ- ଆମମାନଙ୍କ ଅବସ୍ଥା। ଆମମାନଙ୍କ ପାଖରେ କ'ଣ ନାହିଁ- କୋଠା, ବ୍ୟାଙ୍କ ବ୍ୟାଲାନ୍ସ, ଟି.ଭି. ଫ୍ରିଜ୍ ସବୁ କିଛି ଅଛି। ହେଲେ, ତମ ପାଖରେ କ'ଣ ଅଛି? ଏତେ ଶିକ୍ଷା ପାଇ ତମର ଲାଭ କ'ଣ ହେଲା? ତମ ପାଖରେ ନା କୋଠା ଅଛି, ନା ଟଙ୍କା ପଇସା। ଆଉ ଟି.ଭି., ଫ୍ରିଜ୍ କଥା ନ କହିଲେ ଭଲ। ବୁଝିଲ, ଏ' ଖଣ୍ଡାଧାର ପରି ଦୁନିଆଁରେ ଚଳିବା ପାଇଁ ଟିକିଏ ବୁଦ୍ଧି ଦରକାର। ସେଇ ବୁଦ୍ଧି ତମେ ବା ପାଇବ କେଉଁଠୁ? ପ୍ରଚୁର ମଦ ଖାଅ... ଆମମାନଙ୍କ ଭଳି ଧୂର୍ତ୍ତ ହୁଅ... ଆପେ ଆପେ ବୁଦ୍ଧି ତମର ଆସିଯିବ ଯେ...!!!

ସ୍ୱଳ୍ପ ଶିକ୍ଷିତ ବନ୍ଧୁମାନଙ୍କ ଥଟ୍ଟା ଶୁଣି ପାର୍ଥ କେବଳ ମନ୍ଦ ମନ୍ଦ ହସନ୍ତି। କିଛି କହନ୍ତି

ନାହିଁ ସେ। ହେଲେ, ମନେ ମନେ ଭାବନ୍ତି,- "ଆରେ, ମୋ' ବିଷୟରେ ତମେମାନେ କାହିଁକି ଚିନ୍ତିତ ହେଉଛ ? ମୁଁ ଯେମିତି ଅଛି, ଠିକ୍ ଅଛି। ତମମାନଙ୍କ ପାଖରେ ପ୍ରଚୁର ଅର୍ଥ ଅଛି ବୋଲି ତମମାନଙ୍କ ଆଜି ଏ, ବହପ। ଶୁଣ, ତମମାନଙ୍କ ଜୀବନ- ଆସରର ରଙ୍ଗୀନ ମହମବତୀ ଯେତେବେଳେ ତରଳି ଶେଷ ହୋଇଯିବ, ସତ୍ୟର ନିଷ୍ଠୁର ଉତ୍ତାପରେ ଯେତେବେଳେ ତମମାନଙ୍କ ରୋଗାକ୍ରାନ୍ତ ସ୍ଥାଣୁ ଶରୀର ପକ୍ଷଚ୍ୟୁତ ପକ୍ଷୀ- ଭଳି ଆଶ୍ରୟ ନେବ, ଉଲଗ୍ନ ଭାସ୍କର୍ଯ୍ୟର ତୀକ୍ଷ୍ଣସ୍ତନ ଉପରେ, ସେତେବେଳେ ତମମାନଙ୍କ ଆର୍ଦ୍ରତାହୀନ ଆଖି ଇଲାକାରେ ବ୍ୟାପିଯିବ, ଶୁଷ୍କ ସାହାରାର ମୃଗତୃଷ୍ଣା- କିଏ ଦେବ ତମମାନଙ୍କୁ ତମମାନଙ୍କ ଧଇଁ କାଶ ପାଇଁ ଅଫିମ୍। ସ୍ୱର୍ଗକୁ ଟେକୁଥିବା ରାବଣର ଅସତ୍ୟ ନିଶୁଣି ତ ଭାଙ୍ଗି ଯାଇଥିବ ଖିନ୍ ଭିନ୍ ହୋଇ। ତମେମାନେ କାହାର ଆଶ୍ରୟ ନେଇ ଜୀବନର ତପ୍ତ ରକ୍ତ ନଦୀକୁ ଲଂଘିବ ? ?



* ଦୈନିକ ଜନମୁଖର ୯.୧.୨୦୦୭ ସଂଖ୍ୟାରେ ପ୍ରକାଶିତ।

# ନିକଟସ୍ଥ ପାହାଡ଼ର ଆହ୍ୱାନ ଓ ଦୂରସ୍ଥ ଝାଉଁବଣର କାକଳି

ବିକାଶ ଆଲୋକକୁ ଖୁବ୍ ଭଲ ପାଏ । ଆଲୋକକୁ ଭଲ ପାଉଥିବାରୁ ସେ ନିକଟସ୍ଥ ପାହାଡ଼ର ଆହ୍ୱାନକୁ ସ୍ୱାଗତ କରେ । ସକାଳର ସୂର୍ଯ୍ୟ-ସ୍ନାତ ପାହାଡ଼କୁ ସେ ଯେତେବେଳେ ମନୋନିବେଶ ସହକାରେ ଦେଖେ, ସେତେବେଳେ ତା'ର ମନେ ହୁଏ, ସତେ ଯେମିତି ଦୂରସ୍ଥ ଝାଉଁବଣରେ ଅଦୃଶ୍ୟ ଭବିଷ୍ୟତର କାକଳି ପ୍ରତିଧ୍ୱନିତ ହେଉଛି ! !

ଅତୀତରେ ସେ ଯେତେବେଳେ ଭାବନାର ଏକ ସ୍ୱପ୍ନ ମହଲ ନିର୍ମାଣ କରୁଥିଲା, ସେତେବେଳେ ତା'ର ଚାରିଆଡ଼େ ଏକ ଦୁର୍ଭେଦ୍ୟ ଅନ୍ଧାରର ଶମିଆନା କ୍ରମଶଃ ଛାଇ ହୋଇଯାଉଥିବା ଅନୁମାନ କରୁଥିଲା ।

ହେଲେ, ହଠାତ୍ ପରମୁହୂର୍ତ୍ତରେ ସେହି ଦୁର୍ଭେଦ୍ୟ ଅନ୍ଧାରର ଶାମିଆନା ଭିତରେ ଯେମିତି ଏଟମ୍‌ବମ୍ ପରି ଏକ ବିସ୍ଫୋରଣ ଘଟୁଥିଲା । ଫଳତଃ, ତା' ଭାବନାର ସ୍ୱପ୍ନ ମହଲ ଚୁରମାର୍ ହୋଇ ଭାଙ୍ଗିଯାଉଥିଲା । ଆଉ ତା'ର ମନେ ହେଉଥିଲା, ତା'ର ଭାବନାରୂପୀ ସ୍ୱପ୍ନ ମହଲ ଭାଙ୍ଗିଯିବା ପରେ ଏକ ଶିଶିର- ସିକ୍ତ ରାତି କଟିଯାଇଛି ଏବଂ ତା'ର ଭାବନାରୂପୀ ମହଲର ଧ୍ୱଂସାବଶେଷ ତଳେ ଗୋଟେ ରଙ୍ଗୀନ ପକ୍ଷୀ ଦୟନୀୟ ଭାବରେ ମରିପଡ଼ିଛି ! !

ବିକାଶ ହୃଦୟଙ୍ଗମ କରିପାରୁଥିଲା- ନିକଟସ୍ଥ ସୁନ୍ଦର ପାହାଡ଼ର ଆହ୍ୱାନ ଓ ଦୂରସ୍ଥ ଝାଉଁବଣରେ ପ୍ରତିଧ୍ୱନିତ ହେଉଥିବା ଅଦୃଶ୍ୟ ଭବିଷ୍ୟତର କାକଳି ମଧ୍ୟରେ ଥିବା ଦୂରତ୍ୱଟା ଅସୀମ । ତଥାପି, ନିକଟସ୍ଥ ସୁନ୍ଦର ପାହାଡ଼ର ଆହ୍ୱାନ ଓ ଦୂରସ୍ଥ ଝାଉଁବଣରେ ପ୍ରତିଧ୍ୱନିତ ଅଦୃଶ୍ୟ ଭବିଷ୍ୟତ କାକଳିର ସମ୍ପର୍କଟା ଅବିଚ୍ଛେଦ୍ୟ ! !

ଏହାପରେ ବିକାଶ ଏକ ନୂତନ ଦୃଷ୍ଟିକୋଣରୁ ନିକଟସ୍ଥ ସୁନ୍ଦର ପାହାଡ଼ର ଆହ୍ୱାନ ଓ ଦୂରସ୍ଥ ଝାଉଁବଣରେ ପ୍ରତିଧ୍ୱନିତ ଅଦୃଶ୍ୟ ଭବିଷ୍ୟତର କାକଳି ମଧ୍ୟରେ ଥିବା ସମ୍ପର୍କର ଦୂରତ୍ୱକୁ କମ୍ କରିବା ପାଇଁ ଅହରହ ଜୀବନ- ସଂଗ୍ରାମ ଚାଲୁରଖିଛି ।

*ଦୈନିକ ଅଗ୍ନିଶିଖାର ୧୬..୩.୨୦୦୭ସଂଖ୍ୟାରେ ମହାନଦୀ ସାହିତ୍ୟପ୍ରସ୍ଥରେ ପ୍ରକାଶିତ ।

# ମଣିଷ

ପୃଥିବୀ ରୂପୀ ସରୋବରରେ ମଣିଷଟିଏ ପ୍ରସ୍ଫୁଟିତ ହୁଏ। ଯେଉଁଦିନ ମଣିଷ ପ୍ରଥମ କରି ନିଜର ପାଖୁଡ଼ା ମେଲାଏ... ସେହିଦିନ ପୃଥିବୀ ରୂପୀ ସରୋବରର ସ୍ଥୈର୍ଯ୍ୟ ସଂପନ୍ନ ଜଳରାଶି ଚଳ-ଚଞ୍ଚଳ ହୋଇଉଠେ। ଯେମିତି ମନେ ହୁଏ, ପୃଥିବୀ ରୂପୀ ସରୋବରଟି ଏକାବେଳକେ ଆନନ୍ଦିତ ହୋଇଉଠିଛି, ଆତ୍ମ-ଶକ୍ତି ରହିତ ହୋଇପଡ଼ିଛି ! !

ମଣିଷ ଶିଶୁଟି ଦେଖେ- ତା' ଚାରିଆଡ଼େ ତା' ଭଳିଆ ଅନେକ ମଣିଷ। ସେ ସେମାନଙ୍କୁ ଚିହ୍ନିବାକୁ ଚେଷ୍ଟା କରେ, ସେମାନଙ୍କୁ ଚିହ୍ନିପାରେ ବି। ଆଉ ସେମାନଙ୍କ ସହିତ ଏକାକାର ହୋଇଯାଏ।'

ଏହାପରେ ସେ ଯୁବକ ହୁଏ। ତା'ର ଯୁବ ଉଦ୍ଦାମତାରେ ଖେଳିଯାଏ, ଶତକୃଷ୍ଣଚୂଡ଼ାର କର୍ମ-ପ୍ରବଣତା, ଯୁବ ସ୍ୱପ୍ନର ତରଙ୍ଗାୟିତ ସାଗରରେ ଚହଲି ଯାଆନ୍ତି, ଅନେକ ଅନେକ ପ୍ରେରଣାର ସାର୍କ ! !

ସେ ଆଗକୁ ଦେଖେ- ଆଗରେ କଣ୍ଟକିତ, ଅପ୍ରଶସ୍ତ ସର୍ପିଳ ମାର୍ଗ। ସେହି କଣ୍ଟକିତ, ଅପ୍ରଶସ୍ତ ମାର୍ଗକୁ ପାରି କଲେ ଯାଇ ତା'ର ଜୀବନରେ ଆସିବ, ସାର୍ଥକତା, ପରିତୃପ୍ତି। ସେ କିନ୍ତୁ ଡରେ ନାହିଁ, ସେହି କଣ୍ଟକିତ, ଅପ୍ରଶସ୍ତ ମାର୍ଗରେ ଚାଲିବା ପାଇଁ। ଆଉ ମାଡ଼ି ଚାଲେ, ସେହି ମାର୍ଗରେ, ଗୋଟିଏ ପରେ ଆଉ ଗୋଟିଏ ପାଦ ଥାପି ତା'ର ଚିର ଆକାଂକ୍ଷିତ କୋଣାର୍କର ପ୍ରାପ୍ତି ପାଇଁ। ଅନେକ ଲୁହର ଚିରସ୍ରୋତା ପୟସ୍ୱିନୀକୁ ସନ୍ତରଣ କରି, ଅନେକ ଦୁଃଖର ହିମାଳୟକୁ ଆରୋହଣ କରି ଶେଷରେ ସେ ତା'ର ଆକାଂକ୍ଷିତ କୋଣାର୍କକୁ ହାସଲ କରେ।

ଦିନେ କିନ୍ତୁ ସେ ଅନୁଭବ କରେ ଯେ, ତା'ର ସଦ୍ୟ ପ୍ରାପ୍ତ କୋଣାର୍କ ଯେମିତି ଶୂନ୍ୟ ରୂପ ଧାରଣ କରିଛି ଜଣକ ପାଇଁ। ସେ ଜଣକ ହେଉଛି, କୁସୁମ। କୁସୁମର ପ୍ରଥମ ଦର୍ଶନରେ ସୃଷ୍ଟି କରିଥିଲା, ତା'ର ହୃଦୟରେ ଅନେକ ଅନେକ ଲଘୁ ଯନ୍ତ୍ରଣାର ମଧୁ କଂପନ ଓ ଅସୁମାରୀ ବେପଥୁର ଅନିନ୍ଦ୍ୟ ଝଂକାର ! !

ସେ କୁସୁମକୁ ପାଇବା ପାଇଁ ଉତ୍ପୀଡ଼ିତ ହୋଇଉଠେ। ତେବେ ତା'ର ହୃଦୟରେ ସୃଷ୍ଟି ହୋଇଥିବା ଉତ୍ପୀଡ଼ନ ବେଶିଦିନ ବଳବତ୍ତର ରହିପାରେ ନାହିଁ। ଦିନେ କୁସୁମ ଆସି ତା'ର ଗୃହରେ ପାଦ ଦିଏ। ଯେଉଁଦିନ କୁସୁମ ଗୃହରେ ପାଦ ଦିଏ, ସେହିଦିନ ତା'ର ମନେ ହୁଏ, ସତେ ଯେମିତି ତା'ର ନିଃଶବ୍ଦ, ନିଝୁମ ଗୃହ ଏକାବେଳକେ ଅନେକ ବସନ୍ତର କାକଳିରେ ଚଳ-ଚଞ୍ଚଳ ହୋଇ ଉଠିଛି !!

ସେ କୁସୁମକୁ ପାଇ ଭୁଲିଯାଏ, ଜଗତକୁ ଏବଂ ଜଗତର ଦୃଶ୍ୟମାନ ଅସ୍ତିତ୍ୱରାଶିକୁ।

ଦିନ ଗଡ଼ିଚାଲେ, ନଦୀର ସ୍ରୋତ ପରିକ୍ରମେ ବୟସର କୃଷ୍ଣଚୂଡ଼ା ଶୁଷ୍କ ହୋଇଯାଏ, ମନର ଯମୁନାରେ ଖେଳେ ନାହିଁ, ଯୌବନର ଚଳ-ଚଞ୍ଚଳ ଊର୍ମି, ଶରୀର ବାର୍ଦ୍ଧକ୍ୟର କଷାଘାତରେ ଶିଥିଳ ହୋଇପଡ଼େ। ସେ ବୃଦ୍ଧ ହୋଇଯାଏ। ସ୍ଥିର ଚକ୍ଷୁରେ ସଦାବେଳେ ଦେଖାଦିଏ, ମୃତ୍ୟୁର ବୃତ୍ତ। ତା'ର ମନେ ହୁଏ, ମୃତ୍ୟୁର ବୃତ୍ତରେ ଘୂରି ଘୂରି ଦିନେ ସେ ବିଲୀନ ହୋଇଯିବ, ସେହି ଅସ୍ତିତ୍ୱହୀନ ଅବ୍ୟକ୍ତ ସ୍ୱରୂପରେ !!

ସତକୁ ସତ ଦିନେ ଜଗତର ସମସ୍ତ ମାୟା, ମୋହ, ବନ୍ଧନ, ସଂପତ୍ତି ଓ ପ୍ରତିପତ୍ତିକୁ ପଶ୍ଚାଦ୍ ଭାଗରେ ଛାଡ଼ିଦେଇ ସେ ସେହି ଧାମକୁ ଚାଲିଯାଏ, ଯେଉଁଠାରୁ ମଣିଷ କେବେ ଫେରେ ନାହିଁ। ସେହି ଚିରନ୍ତନତାର ଅଲଂଘନୀୟ ନିୟମରେ କବଳିତ ହୋଇଚାଲିଯାଏ ସେ, ଏହି ଜଗତରୁ। କେବଳ ରହିଯାଏ, ତା'ର ସ୍ମୃତି ଓ ସ୍ମୃତିର ସ୍ତୂପ ଯୁଗ ଯୁଗ ଧରି ଆଗାମୀ ପୁରୁଷ ପାଇଁ !!



* ଦୈନିକ ଜନମୁଖର ୨୫.୨.୨୦୦୭ ସଂଖ୍ୟାରେ ପ୍ରକାଶିତ

# ଆଜି ଯିଏ ବସିଛି ରାଜ ସିଂହାସନେ କାଲି ସିଏ ଦାଣ୍ଡର ଭିକାରୀ

ଜନଗହଳିପୂର୍ଣ୍ଣ ସହରର ରାସ୍ତାରେ ଯାଉଁ ଯାଉଁ ହଠାତ୍ ବିକାଶ ବ୍ରେକ୍ ଦେଇ ନିଜର କାର୍‌କୁ ଅଟକାଇ ଦେଲା । ବିକାଶ ନିଜର କାର୍‌କୁ ହଠାତ୍ କାହିଁକି ଏମିତି ଅଟକାଇ ଦେଲା, ସେଥିର ବି କାରଣ ଅଛି । ସମ୍ମୁଖରେ ସେ ଦେଖୁଥିଲା, ଜଣେ ବ୍ୟକ୍ତିକୁ । ବ୍ୟକ୍ତି ଜଣକ ବୋଧହୁଏ ଭିକାରୀଟିଏ । ଭିକାରୀଟିର ମୁଣ୍ଡଟି ନୁଖୁରା- ଅନେକ ଦିନରୁ ତା'ର ମୁଣ୍ଡ ବାଳରେ ତେଲ ବାଜି ନାହିଁ। ସେଥିପାଇଁ ତା'ର ମୁଣ୍ଡ ବାଳତକ କହରା ହୋଇଯାଇଥିଲା । ଭିକାରୀଟି ପିନ୍ଧିଥାଏ, ଗୋଟେ ଛୋଟିଆ ବସ୍ତ୍ର ଧୋତି । ମୁଁ ସେହି ଛୋଟିଆ ବସ୍ତ୍ରକୁ ଧୋତି କହୁଛି । ଯେହେତୁ ଭିକାରୀଟି ଅଣ୍ଟାରୁ ଜଙ୍ଘଯାଏଁ ସେହି ଛୋଟିଆ ବସ୍ତ୍ରକୁ ଧୋତି ପିନ୍ଧିଲା ପରି ପିନ୍ଧିଛି ବୋଲି । ନ ହେଲେ, ସେହି ବସ୍ତ୍ରଟି ଯେ ତୁଚ୍ଛା ଗୋଟେ ବଡ଼ ଗାମୁଛା, ଏଥିରେ ସନ୍ଦେହର ଅବକାଶ ନାହିଁ। ସେହି ବସ୍ତ୍ରଟି ଶେଷ ଥର ପାଇଁ କେବେ ଧୁଆ ହୋଇଥିଲା, ସେଥିର ଗୋଟେ ସଠିକ୍ ତିଥି କହିବା ଏବେ ସମ୍ଭବପର ନୁହେଁ। ପୁନଶ୍ଚ, ସେହି ବସ୍ତ୍ରଟିରେ ପରସ୍ତ ପରସ୍ତ ହୋଇ ଏତେ ପରସ୍ତ ମଇଳା ଜମାଟ ବାନ୍ଧି ରହିଥିଲା ଯେ, ତା'ର ପ୍ରକୃତ ଅସ୍ତିତ୍ୱ କେବେ କେଉଁ ରଙ୍ଗ ଧାରଣ କରିଥିଲା, ସେଥିର ଏବେ ଗୋଟେ ଆନୁମାନିକ ଧାରଣା ଦେବା କେବଳ କଠିଣ, ତାହା ନୁହେଁ କାଠିକର ପାଠ ବି । ଅବଶ୍ୟ ବାଜି ମାରି କହୁଯାଇପାରେ- ସେହି ବସ୍ତ୍ରଟି ଖୁବ୍ ଦାମିକା । ଏହି ବିଷୟ ବି ସେହି ବସ୍ତ୍ରଟିର ଧଡ଼ିରେ ଅଙ୍କିତ ଶୈଳ୍ପିକ କାରୁକାର୍ଯ୍ୟରୁ ବେଶ୍ ସ୍ପଷ୍ଟ ଜଣାପଡ଼ିଯାଉଥାଏ ।

ଭିକାରୀଟି ମୁଣ୍ଡରୁ ଅଣ୍ଟାଯାଏଁ ଓ ପୁଣି ଜଙ୍ଘରୁ ତଳିପା' ଯାଏଁ ଲଙ୍ଗଳା ଥାଏ । ଅନ୍ୟ ଭିକାରୀଙ୍କ ପରି "ବାବା କିଛି ଦିଅ... ଗରିବକୁ ପଇସାଏ ଦିଅ... ନିତ୍ୟ ନୈମିତ୍ତିକ ଶବ୍ଦପୁଞ୍ଜ ତା'ର ପାଟିରୁ ଶୁଣାଯାଉନଥିଲା । କେବଳ ତା'ର ଗୋଟେ ହସ୍ତ ସମ୍ମୁଖ ଭାଗରେ ପ୍ରସାରିତ ହୋଇ ରହିଥିଲା, କିଛି ମାଗିବା ଭଙ୍ଗୀରେ । ପ୍ରକୃତରେ ସେ ବି ଭିକ୍ଷା ମାଗୁଥିଲା,

ନିରବରେ। ଆଉ ତା'ର ପାଦ ଦି'ଟାକୁ ଧୀରେ ଧୀରେ ପକାଉଥିଲା। କହିବାକୁ ଗଲେ, ଘୋଷାରି ଘୋଷାରି ସେ ତା'ର ପାଦ ଦି'ଟାକୁ ପକାଇ ଆଗକୁ ବଢ଼ିଯାଉଥିଲା।

ଭିକାରୀଟିର ପ୍ରସାରିତ ହସ୍ତରେ ଯାହାର ଇଚ୍ଛା ହେଲା, ସିଏ କିଛି ପଇସା ପକାଇ ଦେଇ ଚାଲିଯାଉଥିଲା।

ଭିକାରୀଟି ସ୍ଥିର ଓ ନିଶ୍ଚଳ ଥିଲା। ସେହେତୁ ସେ ସ୍ଥିର ଓ ନିଶ୍ଚଳ ଭାବରେ ଚାଲି ବି ଯାଉଥିଲା। ତାକୁ ଦେଖି ମନେ ହେଉଥିଲା- ସେ ଯେମିତି ଅନ୍ଧଟିଏ। ମାତ୍ର, ସେ ଅନ୍ଧ ନ ଥିଲା। ତା'ର ଆଖିଯୋଡ଼ାକ କିନ୍ତୁ ସ୍ଥିର, ଅଚଞ୍ଚଳ ଓ ଅପଲକ ଭାବରେ ଏକ ମୁଖା ହୋଇ ରହିଥିଲେ। ଯାହାଫଳରେ ତା'ର ଚାଲି ଚଳଣିରେ ଗୋଟେ ଅନ୍ଧ ବ୍ୟକ୍ତିର ଚାଲିଚଳଣିର ମରୀଚିକା ସୃଷ୍ଟି ହେଉଥିଲା।

ଭିକାରୀଟି କିଏ, ତା'ର ନାଁ କ'ଣ, ସେ କେଉଁଠି ରହେ... ଆଦି ପ୍ରଶ୍ନ ପଚାରିବାକୁ ରାସ୍ତାରେ ଯାତାୟତ କରୁଥିବା ଲୋକଙ୍କର ଯୁ ନଥିଲା। କାରଣ, ଏ'ଭଳିଆ ଭିକାରୀ ପ୍ରତିକ୍ଷଣରେ ଏ'ରାସ୍ତାରେ ଯାଉଛନ୍ତି, ଆସୁଛନ୍ତି। କିଏ କାହିଁକି ସାମାନ୍ୟ ଭିକାରୀଟିର ନାଁ ଗାଁ ପଚାରି ନିଜର ସମୟ ବରବାଦ୍ କରିବାକୁ ଚାହିଁବ ?

ମାତ୍ର ଭିକାରୀଟିକୁ ଦେଖି ବିକାଶ କାହିଁକି ଜନଗହଳିପୂର୍ଣ୍ଣ ରାସ୍ତାରେ ଟ୍ରାଫିକ୍ ନିୟମକୁ ଭଙ୍ଗ କରି ହଠାତ୍ ବ୍ରେକ୍ ଦେଇ ନିଜର କାର୍‌ଟିକୁ ଅଟକାଇ ଦେଲା ? ?

ବିକାଶ ଏବେ ନିଜର କାର୍‌ଟିକୁ ଆଣି ରାସ୍ତାକଡ଼ରେ ରଖି ଦେଇଥିଲା। ଆଉ କାର୍‌ରୁ ଓହ୍ଲାଇ ସେହି ଅପରିଚିତ ଭିକାରୀଟିକୁ ଏକ ନିଷ୍ପରେ ଦେଖୁଥାଏ।

ଭିକାରୀଟି ପୂର୍ବପରି ସ୍ଥିର- ନିଶ୍ଚଳ ଭାବରେ ତା'ର ପାଦ ଦି'ଟାକୁ ଘୋଷାରି ଘୋଷାରି ରାସ୍ତା ଉପରେ ଚାଲିଯାଉଥାଏ।

ବିକାଶ ବୋଧହୁଏ ମନେ ମନେ ଭିକାରୀଟିକୁ ଚିହ୍ନିବା ପାଇଁ ପ୍ରୟାସ କରୁଥାଏ- ଭିକାରୀଟିକୁ କେଉଁଠି ଦେଖିଛି। ମାତ୍ର, କେଉଁଠି ଦେଖିଛି, ସେହିଟାକୁ ଠଉରାଇ ପାରୁ ନ ଥାଏ। ଭିକାରୀଟି ଯେ ନିଜର ଜଣେ ପରିଚିତ ବ୍ୟକ୍ତି, ଏହା ସେ ହଲପ୍ କରି କହିପାରେ।

ହଠାତ୍ ତା'ର ମସ୍ତିଷ୍କରେ ଗୋଟେ ପ୍ରତିବିମ୍ବନ ଉଙ୍କି ଉଠିଲା। କିନ୍ତୁ, ଯେଉଁ

ବ୍ୟକ୍ତିର ପ୍ରତିବିମ୍ବନ ତା'ର ମସ୍ତିଷ୍କରେ ପ୍ରତିଫଳିତ ହେଲା, ସିଏ ଯେ ଏଇ ଭିକାରୀ ହୋଇଥିବ, ଏହାକୁ ସେ ବିଶ୍ୱାସ କରିପାରିଲା ନାହିଁ।

ତେଣୁ, ସେ ଭିକାରୀଟିକୁ ଗଭୀର ନିଷ୍ଠାର ସହିତ ନିରେଖିବାରେ ଲାଗିଲା ଯେପରି ଗୋଟେ ଚିତ୍ରକର ତା'ର ଅନନ୍ୟ କୃତିକୁ ନିରେଖେ। ତା'ର ଧାରଣା ଥିଲା, ସେ ଯେଉଁ ବ୍ୟକ୍ତିଙ୍କ ବିଷୟରେ ଭାବୁଛି, ସେହି ବ୍ୟକ୍ତି ଯଦି ଏଇ ଭିକାରୀ ହୋଇଥାନ୍ତି, ତେବେ ନିଶ୍ଚିତ ଭାବରେ ତାଙ୍କ ମୁଖରେ ଗୋଟେ ଗଭୀର କଟା କ୍ଷତ ଚିହ୍ନ ମହଜୁଦ୍ ରହିଥିବ।

ଭିକାରୀଟିର ମୁଖରେ କ୍ଷତ ଚିହ୍ନଟିଏ ଅଛି କି ନାହିଁ, ବିକାଶ ବାରିବାରେ ଲାଗିଗଲା। ତେବେ ଭିକାରୀଟିର ମୁଖ ଏତେ ମଇଳା ଓ ଆବର୍ଜନାପୂର୍ଣ୍ଣ ରହିଥିଲା ଯେ, ସେଠୁ କ୍ଷତ ଚିହ୍ନଟିଏ ଠାବ କରିବା ବଡ଼ ମୁସ୍କିଲ କାମ ଥିଲା। ଭିକାରୀଟିର ମୁଖରେ ଠାଏ ଠାଏ ମଇଳା ଏକତ୍ରିତ ହୋଇ ଗୋଟେ ଗୋଟେ କ୍ଷତ ଚିହ୍ନର ଭ୍ରମ ସୃଷ୍ଟି କରୁଥାନ୍ତି। ତଥାପି, ବିକାଶ ଚେଷ୍ଟା କଲା, ଭିକାରୀଟିର ମୁଖରୁ ଅସଲି କ୍ଷତ ଚିହ୍ନଟିଏ ଖୋଜି ବାହାର କରିବାକୁ। ଶେଷରେ ତା'ର ପ୍ରଚେଷ୍ଟାରେ ସେ କୃତକାର୍ଯ୍ୟ ବି ହେଲା। ପ୍ରକୃତରେ ଭିକାରୀଟିର ମୁଖରେ ଥିଲା- ଗୋଟେ ପୁରୁଣା କ୍ଷତ ଚିହ୍ନ। ଅତି ଗଭୀରତାର ସହିତ ଦେଖିଲେ, ଜଣେ ସେହି କ୍ଷତ ଚିହ୍ନଟିକୁ ଭିକାରୀଟିର ମୁଖରୁ ବାହାର କରିପାରିବ।

ଏବେ ବିକାଶ ସନ୍ଦେହମୁକ୍ତ ହୋଇଗଲା- ଭିକାରୀଟି କିଏ ? ଭିକାରୀଟି ହେଉଛି, ବିକାଶ ବାସ କରୁଥିବା ସହରର ଜଣେ ବିଶିଷ୍ଟ ଧନାଢ଼୍ୟ ଓ ପ୍ରତିପତ୍ତିଶାଳୀ ବ୍ୟକ୍ତି। ଏଇ ବ୍ୟକ୍ତିର କ'ଣ ନଥିଲା- ଧନସଂପତ୍ତି, କୋଠାବାଡ଼ି, ଗାଁ ଗଣ୍ଡା ସବୁ କିଛି ଥିଲା। ସେ ଚାଲିଯାଉଥିଲେ, ଲୋକେ ତାକୁ ସଲାମ କରୁଥିଲେ। ତା'ର ସମ୍ମାନ, ପ୍ରତିଷ୍ଠା ଓ ପ୍ରତିପତ୍ତି ଢେର ଥିଲା। କିନ୍ତୁ, ଜ୍ଞାନ ନଥିଲା। ଜ୍ଞାନ ଥିଲେ, ଆଜି ସେ ଏ' ଅବସ୍ଥା ଭୋଗୁନଥାନ୍ତା। ପିତୃପୁରୁଷଙ୍କ ଶ୍ରମ ଲବ୍ଧ ଧନସମ୍ପତ୍ତିକୁ ସେ ମୁକ୍ତ ହସ୍ତରେ ଖର୍ଚ୍ଚ କରିଥିଲା, ଦିନେ ହେଲେ କେବେ ଭାବିନଥିଲା ଯେ, ପିତୃପୁରୁଷଙ୍କ ଧନ ସଂପତ୍ତିର ସଦ୍‌ବିନିଯୋଗ କରାଯାଉ, ବିପଦ ଆପଦ ବେଳେ ଭବିଷ୍ୟତ ପାଇଁ କିଛି ସଂଚିତ କରି ରଖାଯାଉ। ପାଣି ପରି ପିତୃପୁରୁଷଙ୍କ ଧନ-ସଂପତ୍ତିକୁ ସେ ଭୋଗ ବିଳାସରେ ଖର୍ଚ୍ଚ କରିଥିଲା। ଦିନ ଆସିଲା, ବସି ଖାଇଲେ ନଈ ବାଲି ସରିବା ଭଳି ତା'ର ପିତୃପୁରୁଷଙ୍କ ସମସ୍ତ ଧନସଂପତ୍ତି ସରିଗଲା। ପଇସାଟିଏ ପାଇଁ ସେ ବାରଜାଗା ଶୁଣ୍ଢିପିଣ୍ଡା ହେଲା। ଶେଷରେ ଭିକାରୀ ସାଜିଲା,

ରାଜଦାଣ୍ଡରେ ଭିକ ମାଗିଲା। ସେତେବେଳେ ତା'ର ଚେତା ପଶିଲା। ଭାବିଲା, ସେ ଯାହା କଲା, ଭଲ ନ କଲା। ଅନ୍ତତଃ ତା'ର ପିତୃପୁରୁଷଙ୍କ ଅଗାଧ ଧନ ସଂପତ୍ତିକୁ ଏମିତି ବଦ୍‌ଖର୍ଚ୍ଚ କରିନଥାନ୍ତା। ତେବେ ସେତେବେଳକୁ ଲେଡ଼ିଗୁଡ଼ କହୁଣୀକୁ ଲାଗିଯାଇଥାଏ।

ଭିକାରୀଟି ତା'ର ପାଦ ଦି'ଟାକୁ ଘୋଷାରି ଘୋଷାରି କେତେବେଳୁ ବିକାଶର ସମ୍ମୁଖରୁ ଚାଲିଗଲାଣି। ହେଲେ, ବିକାଶ ସେଠି ଏକ ପ୍ରାଣହୀନ ଜୀବ ପରି ଛିଡ଼ା ହୋଇ ଭିକାରୀଟିର ଉତ୍‌ଥାନ- ପତନ ବିଷୟରେ ଭାବୁଥାଏ।

ହଠାତ୍ ବିକାଶ ପ୍ରକୃତିସ୍ଥ ହେଲା। ଆଉ ରାସ୍ତା କଡ଼ରେ ଛିଡ଼ା ହୋଇଥିବା ତା'ର କାର୍ ଆଡ଼େ ବଢ଼ିଗଲା। କାର୍‌ରେ ଷ୍ଟାର୍ଟ ଦେଲାବେଳେ ସେ ଭାବୁଥିଲା, ମଣିଷର ଉତ୍‌ଥାନ- ପତନ ବିଷୟରେ। ବାସ୍ତବିକ ଆଜି ଯିଏ ବସିଛି, ରାଜସିଂହାସନେ କାଲି ସିଏ ଦାଣ୍ଡର ଭିକାରୀ, ଏଇଟା ଦୁନିଆଁର ଚିରନ୍ତନ ଦସ୍ତୁର।



* ୨୧-୨୭ ଜାନୁୟାରୀ ୧୯୯୦ରେ ପ୍ରଜାତନ୍ତ୍ର ସାପ୍ତାହିକୀରେ ପ୍ରକାଶିତ।

# ଅନନ୍ୟ ମୁହୂର୍ତ୍ତ

ମୁଁ ବଡ଼ ଅଡୁଆ ଅବସ୍ଥାରେ ପଡ଼ିଥିଲି। ଅଜାଗା ଘା' ପରି ମୁଁ ମୋ'ର ଅବସ୍ଥା କାହାକୁ କହିପାରୁନଥିଲି କି ସହ୍ୟ କରିପାରୁନଥିଲି। ଜୀବନରେ କେବେ ଏ'ଭଳି ଗୋଟେ ଅବସ୍ଥାର ଶିକାର ହେବାକୁ ପଡ଼ିବ ବୋଲି ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲି। ପ୍ରଥମ ଥର ପାଇଁ ଯେଉଁଦିନ ତାକୁ ଦେଖିଥିଲି, ସେହିଦିନଠୁଁ ମୁଁ ସେହି ଅଡୁଆ ଅବସ୍ଥାର ଶିକାର ହୋଇଥିଲି ଏବଂ ଏକ ରକମ ଅସ୍ଥିର ରହିବାରେ ଲାଗିଥିଲି।

ଏବେ ବି ମନେ ପଡ଼େ ମୋ'ର, ସେହିଦିନର ସେହି ମୁହୂର୍ତ୍ତ। ସନ୍ଧ୍ୟା ବେଳା। ଅସ୍ତଗାମୀ ସୂର୍ଯ୍ୟର ଲାଲିମା ବିସ୍ତୀର୍ଣ୍ଣ ସବୁଜିମାକ୍ତ ଘାସ ପଡ଼ିଆରେ ବିଛାଇ ହୋଇପଡ଼ିଥିଲା। ସେହି ବିସ୍ତୀର୍ଣ୍ଣ ପଡ଼ିଆର ସବୁଜ ଘାସ ପ୍ରାୟ ଗାଲିଚା ଉପରେ ମତେ ପଛ କରି ବସି ସେ ଅସ୍ତଗାମୀ ସୂର୍ଯ୍ୟର ଅସ୍ତରାଗକୁ ଏକ ନିଷରେ ନିରେଖୁଥିଲା। ସେତେବେଳେ ନୀଡ଼ ଅଭିମୁଖୀ ଚଢ଼େଇମାନେ ଆକାଶରେ ବିଚ୍ଛୁରିତ ଲାଲିମାର ଘନ କୁହୁଡ଼ିକୁ ଚିରି ଉଡ଼ିଯାଉଥିଲେ। ଦୂରସ୍ଥ ପାହାଡ଼ର ଉହାଡ଼ରେ ସୂର୍ଯ୍ୟ ଆସ୍ତେ ଆସ୍ତେ ବୁଡ଼ି ଯାଉଥିଲା। ସୂର୍ଯ୍ୟର ଚେନାଏ ଲାଲିମା ଆକାଶରେ ବିଚରଣ କରୁଥିବା ମେଘଙ୍କ ସହିତ ଲୁଚକାଳି ଖେଳ ଖେଳୁଥିଲା। ମନେ ହେଉଥିଲା, ଦୂରସ୍ଥ ପାହାଡ଼ର ରକ୍ତିମ ଓଷ୍ଠଧାରର ଉହାଡ଼ରେ ସୂର୍ଯ୍ୟ ଯେମିତି ଅସ୍ତ ହେଉଛି !!

କିଛି କ୍ଷଣ ପରେ ସୂର୍ଯ୍ୟ ଅସ୍ତ ହୋଇଯାଇଥିଲା। ଆଉ ସେ ବସିଥିବା ସ୍ଥାନରୁ ଉଠି ପଛକୁ ଲେଉଟି ଦେଖିଥିଲା। ପଶ୍ଚାଦ୍ ଭାଗରେ ଦଣ୍ଡାୟମାନ ହୋଇଥିଲି ମୁଁ। ଯେଉଁ ମୁହର୍ତ୍ତରେ ମୁଁ ତାକୁ ଦେଖିଥିଲି, ସେହି ମୁହୂର୍ତ୍ତରେ ସ୍ତବ୍ଧ ହୋଇଯାଇଥିଲି। ସେହି ମୁହୂର୍ତ୍ତର କାରାଗାରରେ ଯେମିତି ପ୍ରବହମାନ ସମୟଟି କଏଦ୍ ହୋଇଯାଇଛି। ଆଉ ମୁଁ କେଉଁ ଅଜଣା, ଅର୍ଦ୍ଧ ବିସ୍ମୃତ ସ୍ମୃତିର ଆବର୍ତ୍ତରେ କୁଟାଟିଏ ପରି ଘୂରି ବୁଲୁଛି !!

ଯେତେବେଳେ ମୁଁ ପ୍ରକୃତିସ୍ଥ ହୋଇଥିଲି, ସେତେବେଳେ ଅନୁଭବ କରିଥିଲି, ସେହି ଅନନ୍ୟ ମୁହୂର୍ତ୍ତର କାରାଗାରରେ କଏଦ୍ ହୋଇଥିବା ପ୍ରବହମାନ ସମୟଟି ହଠାତ୍ ମୁକ୍ତ ହୋଇଯାଇଛି। ମାତ୍ର, ପରିବେଶଟି ଠିକ୍ ପୂର୍ବପରି ରହିଥିଲା। ପୂର୍ବପରି ଏବେ ବି

ନୀଡ଼ ଅଭିମୁଖୀ ଚଢ଼େଇମାନେ ଆକାଶସ୍ଥ ଅବଶିଷ୍ଟାଂଶ ଲାଲିମାର ଘନ କୁହୁଡ଼ିକୁ ଚିରି ଉଡ଼ିଯାଉଥିଲେ । ଏବେ ବି ଟେନାଏ ଲାଲିମା ଆକାଶରେ ବିଚରଣ କରୁଥିବା ମେଘମାନଙ୍କ ସହିତ ଲୁଚକାଳି ଖେଳ ଖେଳୁ ଥିଲା । ତଫାତ୍ ଏତିକି ଥିଲା ଯେ, ସେ ଆଉ ସେଠି ନଥିଲା, ପଡ଼ିଆଟି ଶୂନ୍‌ଶାନ୍ ହୋଇପଡ଼ିଥିଲା । କେବଳ ସେଠି ତା'ର ମହକ ବାୟୁ ସହିତ ମିଶି ଟିକିଏ ପୂର୍ବର ତା' ଉପସ୍ଥିତିର ସୂଚନା ଦେଉଥିଲା ।

ମୁଁ ଚାରିଆଡ଼େ ଦୃଷ୍ଟି ବଢ଼ାଇଥିଲି ଏହି ଆଶାରେ ଯେ, କାଳେ ସେ କେଉଁଠି ଥିବା ମାତ୍ର, ସେ କୌଣସି ଠିଁ ନଥିଲା । ତେଣୁ, ମୁଁ ନିରାଶ ମନରେ ଫେରି ଆସିଥିଲି, ମୋ'ର ଘରକୁ ।

ଏହାପରେ ସେହି ଅନନ୍ୟ ମୁହୂର୍ତ୍ତ ସ୍ମରଣ ହୋଇଗଲେ, ମୋ'ର ମନେ ହେଉଥିଲା, ପ୍ରବହମାନ ସମୟଟି ଯେମିତି ସେହି ଅନନ୍ୟ ମୁହୂର୍ତ୍ତର କାରାଗାରରେ କଏଦ୍ ହୋଇଯାଇଛି । ଆଉ ମୁଁ କେଉଁ ଅଜଣା, ଅର୍ଦ୍ଧ ବିସ୍ମୃତ ସ୍ମୃତିର ଆବର୍ତ୍ତରେ କୁଟାଟିଏ ପରି ଘୂରି ବୁଲୁଛି ।।

ମୁଁ ମନେ ମନେ ଭାବୁଥିଲି, ତାହାହେଲେ ମୁଁ କ'ଣ ପ୍ରେମରେ ପଡ଼ିଯାଇଛି ?

ମାତ୍ର, ମୋ' ଭଳି ଜଣେ ବ୍ୟକ୍ତି ଗୋଟେ ଝିଅର ପ୍ରେମରେ ପଡ଼ିଯିବାଟାକୁ କାହିଁକି ମୁଁ ବିଶ୍ୱାସ କରିପାରୁନଥିଲି । କାରଣ, ସେହି ଅନନ୍ୟ ମୁହୂର୍ତ୍ତର ଅନ୍ତରାଳରେ ଗୋଟେ ଅଜ୍ଞାତ ବା ଦୈବୀରହସ୍ୟ ନିଶ୍ଚିତ ଭାବରେ ନିହିତ ରହିଛି, ଏହି ଧାରଣା ମୋ'ର ମନରେ ଦୃଢ଼ୀଭୂତ ହୋଇସାରିଥିଲା । ସୁତରାଂ, ଗୋଟେ ଝିଅର ପ୍ରେମରେ ପଡ଼ିଯିବାର ଯେଉଁ ଭାବନାଟି ମୋ'ର ମନରେ ବାରବାର ଉକୁଟି ଉଠୁଥିଲା, ସେହିଟାକୁ ଏହି ଯୁକ୍ତି ବଳରେ ମିଥ୍ୟା ବୋଲି କହି ନିଜକୁ ସବୁବେଳେ ପ୍ରବୋଧନ ଦେଉଥିଲି ଯେ, ମୁଁ ଜଣେ ପଦସ୍ଥ କର୍ମଚାରୀ, ଗୃହରେ ଅନନ୍ୟ ରୂପବନ୍ତୀ ସ୍ତ୍ରୀ ଓ ଦିଓଟି ସନ୍ତାନର ଅଧିକାରୀ, ଗୋଟେ ଅପରିଚିତ ଝିଅର ପ୍ରେମରେ ପଡ଼ିଯିବାଟା ପୂରାପୂରି ଅମୂଳକ । ତଥାପି, ମୁଁ ସେହି ଅନନ୍ୟ ମୁହୂର୍ତ୍ତର ଜାଲରେ ଧୃତ ମତ୍ସ୍ୟଟିଏ ପରି ଛଟପଟାଉଥିଲି ।

ଶେଷରେ ଦିନେ ନିଷ୍ପତ୍ତି ନେଇଥିଲି ଯେ, ମୁଁ କୌଣସି ମାନସିକ ଡାକ୍ତରଙ୍କ ସହିତ ମୋ'ର ସମସ୍ୟା ବାବଦରେ ପରାମର୍ଶ କରିବି । ତଦନୁସାରେ ମୁଁ ଯାଇ ପହଞ୍ଚିଲି, ସହରର ଗୋଟେ ବିଖ୍ୟାତ ମାନସିକ ଡାକ୍ତରଙ୍କ ଚ୍ୟାମ୍ବରରେ । ଆଉ ଡାକ୍ତରଙ୍କୁ ମୋ'ର ସମସ୍ୟା ପୁଙ୍ଖାନୁପୁଙ୍ଖ ଭାବରେ ଜଣାଇଥିଲି । ଡାକ୍ତର ଜଣକ ମୋ'ଠୁଁ ମୋ'ର ସମସ୍ୟା

ବିଷୟରେ ଅବଗତ ହୋଇ ମତେ କହିଥିଲେ,- "ମି. ପାତ୍ର, ଆପଣ ଗୋଟେ ଝିଅର ପ୍ରେମରେ ପଡ଼ି ଯାଇଛନ୍ତି ! !" ତା'ପରେ ସେ ମୃଦୁ ହସିଥିଲେ।

ମୁଁ କିନ୍ତୁ ଡାକ୍ତରଙ୍କ ବକ୍ତବ୍ୟକୁ ଦୃଢ଼ ଭାବରେ ଖଣ୍ଡନ କରି କହିଥିଲି,- "କିନ୍ତୁ, ଗୋଟେ ଝିଅର ପ୍ରେମରେ ପଡ଼ିଯାଇଛି ବୋଲି ତ ମୁଁ ଅନୁଭବ କରିପାରୁନାହିଁ। ତା'ଛଡ଼ା... ।"

ଡାକ୍ତର ଜଣକ କିନ୍ତୁ ମୋ'ଠୁଁ କଥା ଛଡ଼ାଇ ନେଇ କହିଥିଲେ,- "ଦେଖନ୍ତୁ, ଆପଣ ଅନୁଭବ କରନ୍ତୁ ବା ନ କରନ୍ତୁ, ଏଠି ତାହା ଅପ୍ରାସଙ୍ଗିକ। ତେବେ ଆପଣଙ୍କ ବକ୍ତବ୍ୟରୁ ଏହା ସ୍ପଷ୍ଟ ଯେ, ଆପଣଙ୍କ ଅବଚେତନ ମନରେ ଥିବା ସେହି ଝିଅଟି ପ୍ରତି ଲୁକ୍‌କାୟିତ ପ୍ରେମ ଆପଣଙ୍କ ଚେତନ ମନରେ ଉଦ୍‌ଭାସିତ ହେଉଛି। ଯାହାଫଳରେ ଆପଣ ଅସ୍ଥିର ହୋଇ ଉଠୁଛନ୍ତି। ସେ ଯାହା ହେଉ, ଚିନ୍ତା କରିବାର କିଛି ଆବଶ୍ୟକତା ନାହିଁ। ଏବେ ବେଶି ବୁଲାଚଲା କରନ୍ତୁ। ମୁଁ କିଛି ଔଷଧ ଲେଖି ଦେଉଛି, ସେହିଟା ଆପଣ ନିୟମିତ ସେବନ କରନ୍ତୁ। ଆସ୍ତେ ଆସ୍ତେ ସବୁ ଠିକ୍ ହୋଇଯିବ।"

ଡାକ୍ତରଙ୍କ ପରାମର୍ଶ ଅନୁଯାୟୀ ମୁଁ ଏବେ ବେଶି ବୁଲାଚଲା ଆରମ୍ଭ କରି ଦେଇଥିଲି। ତା' ସହିତ ଡାକ୍ତରଙ୍କ ନିର୍ଦ୍ଦେଶିତ ଔଷଧ ବି ନିୟମିତ ଖାଇଥିଲି। ଅନେକ ମାସ ବିତି ଗଲା ପରେ ବି ଫଳ କିଛି ହୋଇନଥିଲା।

ସେହି ସମୟରେ ସହରର ଗୋଟେ ଧର୍ମାନୁଷ୍ଠାନକୁ ଜଣେ ବିଶିଷ୍ଟ ପଣ୍ଡିତ ତଥା ଧର୍ମପ୍ରବକ୍ତା ଆସିଥାନ୍ତି। ଦିନେ ଦୈବାତ୍ ସେହି ଧର୍ମ ପ୍ରବକ୍ତାଙ୍କ ସହିତ ମୋର ସାକ୍ଷାତ ହୋଇଯାଇଥିଲା। କଥା ପ୍ରସଙ୍ଗରେ ମୁଁ ତାଙ୍କୁ ମୋ'ର ସମସ୍ୟା ବାବଦରେ କହିଥିଲି। ସେ ଅତି ଧୈର୍ଯ୍ୟର ସହିତ ମୋ'ର ସମସ୍ୟା ଶୁଣିଥିଲେ। ଆଉ ମତେ କହିଥିଲେ,- "ଦେଖ, ମୁଁ ଗୋଟେ ପରାମର୍ଶ ଦେଉଛି- ତମେ ନିତି ଭଗବଦ୍ ଗୀତା ପଠନ କର। ଆପେ ଆପେ ତମେ ତମ ସମସ୍ୟାର ସମାଧାନ ପାଇଯିବ।"

ସେହି ଧର୍ମ-ପ୍ରବକ୍ତାଙ୍କ ପରାମର୍ଶକୁ ଗୁରୁଜ୍ଞାନ ମନେ କରି ମୁଁ ନିତି ଭଗବଦ୍‌ଗୀତାର କିଛି କିଛି ଅଂଶ ପଠନ କରିବାରେ ଲାଗିଥିଲି।

ଗୋଟେ ନିର୍ଦ୍ଦିଷ୍ଟ ଦିନ ଭଗବଦ୍‌ଗୀତା ପଠନ କଲା ବେଳେ ଗୋଟେ ସ୍ଥାନରେ ପଢ଼ି ଜାଣିଥିଲି ଯେ, ଆତ୍ମା ଅମର, ଅଜର ଏବଂ ଗୋଟେ ଶରୀରକୁ ତ୍ୟାଗ କରି ଅନ୍ୟ

ଗୋଟେ ଶରୀରରେ ବସାବାନ୍ଧେ । ଏହାଛଡ଼ା, ମୁଁ ଆଉ ମଧ୍ୟ ପଢ଼ି ଜାଣିପାରିଥିଲି ଯେ, ଆତ୍ମାର ସଂବନ୍ଧ ଜନ୍ମଜନ୍ମାନ୍ତରରେ ଅତୁଟ ରହେ ।

ଉକ୍ତ ବିଷୟ ଜାଣି ମୁଁ ଯେମିତି ଅନୁଭବ କରିଥିଲି, ଅନେକ ଦିନରୁ ହଜି ଯାଇଥିବା ମୋ'ର ଗୋଟେ ଅମୂଲ୍ୟ ପଦାର୍ଥ ପାଇଯାଇଛି । ଆଉ ଭାବିଥିଲି, ତାହାହେଲେ ସେହି ଝିଅ ସହିତ ମୋ'ର ସମ୍ବନ୍ଧ କ'ଣ ବିଗତ ଜନ୍ମରେ ଥିଲା, ଯାହା ଫଳରେ ତାକୁ ପ୍ରଥମ କରି ଦେଖିଲା ମାତ୍ରେ ମୋ'ର ଅବଚେତନ ମନରେ ସୁପ୍ତାବସ୍ଥାରେ ରହିଥିବା ବିଗତ ଜନ୍ମର ସଂବନ୍ଧ ଅବଶେଷ ମୋ'ର ଚେତନ ମନରେ ଉଦ୍‌ଭାସିତ ହୋଇ ମତେ ଅସ୍ଥିର କରି ପକାଉଥିଲା ? ?

– "ହୋଇପାରେ !" ମୁଁ ନିଜକୁ ନିଜେ ସ୍ୱଗତ କଲା ପରି କହିଥିଲି ।

ଏହା ପରେ ମୁଁ ଆଉ ସେହି ଅନନ୍ୟ ମୁହୂର୍ତ୍ତର ସ୍ମରଣରେ ବିଚଳିତ ହୋଇନଥିଲି । କହିବାକୁ ଗଲେ, ମୁଁ ଭଗବଦ୍‌ଗୀତା ପଠନ କରି ମୋ'ର ସମସ୍ୟାର ସମାଧାନ ପାଇ ଯାଇଥିଲି ।



ସିଦ୍ଧେଶ୍ୱରୀ ଧର୍ମ ସଂସଦ, ସମ୍ବଲପୁରର ମୁଖପତ୍ର ସିଦ୍ଧିପ୍ରଜ୍ଞା-୧୯୯୪-୯୫ରେ ପ୍ରକାଶିତ ।

# ଗୋଟେ ଗ୍ଲାନିଭରା ଦିବସର ହିସାବ

ମୋହନ ଅଫିସ୍‌ର କାନ୍ଥ ଘଣ୍ଟା ଆଡ଼େ ଦେଖିଥିଲା- ସମୟ ଠିକ୍ ପାଞ୍ଚଟା ତିରିଶ ମିନିଟ୍ ହୋଇଥାଏ। ଅଫିସ୍‌ଟି ପୂରାପୂରି ଖାଲି ହୋଇଯାଇଥିଲା। ହେଲେ, ମୋହନର କାମ ସେତେବେଳ ଯାଏଁ ସରି ନଥିଲା। ଅର୍ଥାତ୍, ଅଫିସରଙ୍କ ହୁକୁମ୍ ମୁତାବକ୍ ଆକାଉଣ୍ଟସ୍ ବିବରଣୀଟି ପ୍ରସ୍ତୁତ ହୋଇପାରିନଥିଲା। ମୋହନ ଭାବିଥିଲା- ଆଜି ରାତି ନଅଟା ସୁଦ୍ଧା ଯେ କୌଣସି ମତେ ତାକୁ ଆକାଉଣ୍ଟସ୍ ବିବରଣୀଟି ପ୍ରସ୍ତୁତ କରିବାକୁ ପଡ଼ିବ। କାରଣ, ସାହେବ ଆଜି ରାତିରେ ଜରୁରୀ ଆକାଉଣ୍ଟସ୍ ବିବରଣୀଟି ନେଇ ରାଜଧାନୀ ବସ୍‌ରେ ଭୁବନେଶ୍ୱରକୁ ଯିବେ। ଆଉ ଭୁବନେଶ୍ୱରସ୍ଥ ବଡ଼ ଅଫିସ୍‌ରେ ଆସନ୍ତାକାଲି ତାହାକୁ ଦାଖଲ କରିବେ।

ତେଣୁ ମୋହନ ଜରୁରୀ ଆକାଉଣ୍ଟସ୍ ବିବରଣୀଟିକୁ ଶୀଘ୍ର ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ବ୍ୟସ୍ତ ହୋଇପଡ଼ିଥିଲା। ଅନେକ ସମୟ ଯାଏଁ ଯୋଗ ବିଯୋଗ କରିବା ପରେ ମୋହନ ବୋଧହୁଏ ହିସାବରେ କେଉଁଠି ଭୁଲ୍ କରିଦେଇଥିଲା। ଫଳତଃ ତା'ର କାମ ହଠାତ୍ ବନ୍ଦ ହୋଇଯାଇଥିଲା। ସେତେବେଳେ ସେ ଭାବିଥିଲା... ସତରେ ତା'ର ସ୍ତ୍ରୀ କ'ଣ ଭାବୁଥିବ ? ଆଜି ସକାଳ ଆଠଟାରେ ମାସିକିଆ ସୌଦା କିଣିବା ପାଇଁ ଘରଠୁଁ ବଜାରକୁ ବାହାରିଥିଲା ଯେ, ସନ୍ଧ୍ୟା ଛ'ଟା ହେବାକୁ ବସିଲାଣି ସେ ତା'ର ସ୍ତ୍ରୀକୁ ତା'ର ଅସୁବିଧା ବିଷୟରେ ଖବରଟିଏ ପଠାଇପାରିନାହିଁ।... ଏଇ ଭାବନା ତାକୁ ସମୁଦ୍ରର ଉର୍ମି ଭଳି ଗ୍ଲାନିରେ ଉତ୍‌କ୍ଷିପ୍ତ କରି ପକାଇଥିଲା।

ବିଗତ ଦୁଇ ସପ୍ତାହ ଧରି ଅଫିସ୍‌ର ଜରୁରୀ କାର୍ଯ୍ୟରେ ଟୁର ଯାଇଥିବାରୁ ମୋହନ ଚଳିତ ମାସର ମାସିକିଆ ସୌଦା ପତ୍ର ବଜାରଠୁଁ କିଣି ଆଣିପାରିନଥିଲା। ଗତକାଲି ରାତିରେ ଅଫିସିଆଲ୍ ଟୁର୍‌ରୁ ଘରକୁ ଫେରିଥିଲା ଏବଂ ନିଷ୍ପତ୍ତି ନେଇଥିଲା ଯେ, ଆସନ୍ତାକାଲି ସେ ଘରର ମାସିକିଆ ସୌଦାପତ୍ର କିଣିବା ସହ ଅନ୍ୟାନ୍ୟ ଘରୋଇ କାର୍ଯ୍ୟ କରିବା ପାଇଁ ଅଫିସ୍‌ରୁ ଛୁଟୀ ନେବ। ତେଣୁ, ସେ ଆଜି ସକାଳ ଆଠଟା ବେଳେ ବଡ଼ ବ୍ୟାଗ୍ ଧରି ଘରଠୁଁ ବଜାରଆଡ଼େ ବାହାରିଥିଲା, ମାସିକିଆ ସୌଦାପତ୍ର କିଣିବା ପାଇଁ। ଏହାଛଡ଼ା,

ଅଫିସିଆଲ୍ ଟୁର୍ ଗଲା ଦିନ ସେ ପୁଅର ସ୍କୁଲ ୟୁନିଫର୍ମ ତିଆରି କରିବା ପାଇଁ ଦର୍ଜୀକୁ କପଡ଼ା ଦେଇଥିଲା। ଦର୍ଜୀ ବୋଧହୁଏ ପୁଅର ସ୍କୁଲ ୟୁନିଫର୍ମ ତିଆରି କରିସାରିଥିବ।

ମାତ୍ର, ଜରୁରୀ ଅଫିସିଆଲ୍ ଟୁର୍ ଯୋଗୁଁ ସେ ଜର୍ଦୀଠୁଁ ପୁଅର ସ୍କୁଲ ୟୁନିଫର୍ମ ଆଣିପାରିନଥିଲା। ଆଜି ଶେଷଥର ପାଇଁ ପୁଅ ତାକୁ ତାଗିଦ୍ ଦେଇ କହିଥିଲା,- "ବାପା, ଆଜି ମୋ'ର ସ୍କୁଲ ୟୁନିଫର୍ମ ନିଶ୍ଚିତ ଭାବରେ ଦର୍ଜୀଠୁଁ ଆଣିଦେବ। ନ ହେଲେ, ମୋ'ର ସାର୍ କହିଛନ୍ତି, ଆଜି ମତେ କ୍ଲାସ୍‌ରେ ବସିବାକୁ ଦେବେ ନାହିଁ।" ତେଣୁ, ଆଜି ମୋହନର ମୁଖ୍ୟ କାମ ଥିଲା, ଘରର ମାସିକିଆ ସୌଦାପତ୍ର କିଣିବା ସହିତ ଦର୍ଜୀଠୁଁ ପୁଅର ସ୍କୁଲ ୟୁନିଫର୍ମ ଆଣିବା।

ସକାଳେ ବଜାରକୁ ଯାଉଥିବା ବେଳେ କିନ୍ତୁ ମୋହନ ବାଟରେ ତା' ଅଫିସ୍‌ର ପିଅନ୍‌କୁ ଭେଟିଥିଲା। ଅଫିସ୍‌ର ପିଅନଟି ମୋହନକୁ ନମସ୍କାର ଜଣାଇ କହିଥିଲା, "ଆଜ୍ଞା, ମୁଁ ଆପଣଙ୍କ ବସାକୁ ଯାଉଥିଲି।"

ମୋହନ ବିସ୍ମିତ ହୋଇ ପିଅନ୍‌କୁ ପଚାରିଥିଲା,- "କାହିଁ ପାଇ ?"

- "ସାହେବ, ଆପଣଙ୍କୁ ଡକାଇଛନ୍ତି।" ପିଅନଟି ମୋହନକୁ କହିଥିଲା।

- "ମୁଁ କିନ୍ତୁ ଆଜି ଛୁଟୀ ନେଇଛି ଯେ... ସାହେବ କ'ଣ ଜାଣିନାହାଁନ୍ତି ?" ମୋହନ ଟିକିଏ ଚିନ୍ତିତ ହୋଇ ପିଅନ୍‌ଟିକୁ କହିଥିଲା।

- "ଜାଣିଛନ୍ତି। ହେଲେ, ଅଫିସ୍‌ରେ କ'ଣ ଗୋଟେ ଜରୁରୀ କାମ ଅଛି। ତେଣୁ, ସାହେବ କହିଛନ୍ତି, ଆପଣ ଶୀଘ୍ର ଚାଲନ୍ତୁ ଅଫିସ୍‌କୁ। ଅଫିସ୍‌ରେ ସାହେବ ଆପଣଙ୍କୁ ଅପେକ୍ଷା କରିଛନ୍ତ।" ପିଅନ୍‌ଟି କହିଥିଲା ଏବଂ ମୋହନଠୁଁ ବିଦାୟ ନେଇ ଚାଲିଯାଇଥିଲା।

ଅଫିସ୍‌ରେ ସାହେବ ଗୋଟେ ଜରୁରୀ କାମ ପାଇଁ ତାକୁ ଅପେକ୍ଷା କରିଥିବା ଜାଣି ମୋହନ ଆଉ ବଜାରକୁ ନ ଯାଇ ସିଧା ଅଫିସ୍‌ରେ ପହଞ୍ଚିଥିଲା। ଅଫିସ୍‌ରେ ସାହେବ ମୋହନକୁ ଗୋଟେ ଜରୁରୀ ଆକାଉଣ୍ଟସ୍ ବିବରଣୀ ରାତି ନଅଟା ସୁଦ୍ଧା ପ୍ରସ୍ତୁତ କରିବା ସକାଶେ ଆଦେଶ ଦେଇଥିଲେ।

ସକାଳ ନଅଟାରୁ ମୋହନ ଅଫିସ୍‌ର ଜରୁରୀ ଆକାଉଣ୍ଟସ୍ ବିବରଣୀଟିକୁ ପ୍ରସ୍ତୁତ କରିବାରେ ନିଜକୁ ନିୟୋଜିତ କରିଥିଲା ଯେ, ରାତି ଠିକ୍ ନଅଟାରେ ଜରୁରୀ ଆକାଉଣ୍ଟସ୍

ବିବରଣୀଟିକୁ ସଂପୂର୍ଣ୍ଣ କରିଥିଲା । ଆଉ ଆଶ୍ୱସ୍ତିର ନିଶ୍ୱାସ ସେ ନେଇଥିଲା ।

ମୋହନ ସାହେବଙ୍କ ରୁମ୍‌କୁ ଯାଇ ପୂର୍ଣ୍ଣାଙ୍ଗ ଆକାଉଣ୍ଟସ୍ ବିବରଣୀଟିକୁ ସାହେବଙ୍କୁ ଦେଇଥିଲା ଏବଂ କହିଥିଲା,- "ସାର୍, ମୁଁ ଏବେ ଯାଇପାରେ ?"

- "ହଁ ।" ସାହେବ ମୁଣ୍ଡ ହଲାଇ ମୋହନକୁ ଅନୁମତି ଦେଇଥିଲେ ।

କିରାଣୀ ଜୀବନର ସାଥୀ ତା'ର ଧଡଡ଼ା ସାଇକେଲ୍‌ଟିକୁ ଧରି ଅଫିସ୍‌ରୁ ବାହାରିବା ବେଳେ ମୋହନ ଭାବିଥିଲା, ସେ ଆଉ ବଜାରକୁ ଯିବ ନାହିଁ । କାରଣ, ରାତି ନଅଟା ପରେ ସବୁ ତେଜରାତି ଦୋକାନ ବନ୍ଦ ହୋଇଯାଇଥାଏ । ତେଣୁ, ସେ ମାସିକିଆ ସୌଦାପତ୍ର କିଣିବା କାମ ଆସନ୍ତାକାଲିକୁ ରଖି ପୁଅର ସ୍କୁଲ ୟୁନିଫର୍ମ ଆଣିବା ପାଇଁ ଦର୍ଜୀ ଦୋକାନରେ ପହଞ୍ଚିଥିଲା । ହେଲେ, ଦର୍ଜୀ ଦୋକାନଟି ବି ବନ୍ଦ ହୋଇଯାଇଥିଲା ।

ଶେଷରେ ମୋହନ ନିରାଶ ମନରେ ଗୋଟେ ପରାଜିତ ସୈନିକ ପରି ତା'ର ଧଡଡ଼ା ସାଇକେଲ୍‌ଟିକୁ ଘୋଷାରି ଘୋଷାରି ତା'ର ବସାରେ ପହଞ୍ଚି ଥିଲା । ସେତେବେଳେ ରାତି ଦଶଟା ହୋଇଯାଇଥିଲା ।

ମୋହନ କାହାରିକୁ କିଛି ନ କହି ତା'ର ଶୋଇବା କୋଠରୀକୁ ଆସିଥିଲା । ତା'ର ପୁଅଟି ତାକୁ ଅପେକ୍ଷା କରି କରି ଶୋଇ ପଡ଼ିଥିଲା । ତା'ର ସ୍ତ୍ରୀ କିନ୍ତୁ ଆଖି ବୁଜି ଶୋଇପଡ଼ିଥିବାର ଛଳନା କରୁଥିଲା । ମୋହନ ଜାଣିଥିଲା, ତା'ର ସ୍ତ୍ରୀକୁ ଏବେ ଖାଇବାକୁ ମାଗିଲେ, ଗୋଟେ କୁରୁକ୍ଷେତ୍ର ସୃଷ୍ଟି ହେବ । ତେଣୁ, ମୋହନ ପ୍ୟାଣ୍ଟ ସାର୍ଟ ଖୋଲି ଲୁଙ୍ଗି ପିନ୍ଧିଥିଲା ଏବଂ ସୁରେଇରୁ ଗୋଟେ ଗ୍ଲାସ୍ ଥଣ୍ଡା ପାଣି ପିଇ ଶୋଇପଡ଼ିଥିଲା ।

ମୋହନର କିରାଣୀ ଜୀବନ- ଜମାଖାତାରେ ଗୋଟେ ଗ୍ଲାନି ଭରା ଦିନର ଅର୍ଜିତ ଅନୁଭୂତିରୂପୀ ହିସାବ ଜମା ହୋଇଯାଇଥିଲା ।



* ଦୈନିକ ଜନମୁଖ-୨୨.୧୨.୨୦୦୫ରେ ପ୍ରକାଶିତ ।

# ଶେଷ ନିଷ୍ପତ୍ତି

ଆକାଉଣ୍ଟାଣ୍ଟ ଭାବରେ ଦାୟିତ୍ୱ ବହନ କରିବା ପାଇଁ ବଡ଼ ସାହେବଙ୍କଠୁଁ ଆଦେଶ ପାଇ ମୋହନ ତାଜୁବ୍ ହୋଇଗଲା। ସେ ସ୍ୱପ୍ନରେ ସୁଦ୍ଧା ଭାବିନଥିଲା ଯେ, ବଡ଼ ସାହେବ ତାକୁ ଆକାଉଣ୍ଟାଣ୍ଟ ଭାବରେ ଅବସ୍ଥାପିତ କରିବେ ବୋଲି। କାହିଁକି ନା, ଅଫିସ୍‌ରେ ତା'ଠୁଁ ଆହୁରି ଅନେକ ସିନିୟର୍ କର୍ମଚାରୀ ଥିଲେ, ଯେଉଁମାନେ ଆକାଉଣ୍ଟାଣ୍ଟ ହେବା ପାଇଁ ଆଶାୟୀ ଥିଲେ। ହେଲେ, ବଡ଼ ସାହେବ ସମସ୍ତ ସିନିୟର୍ କର୍ମଚାରୀଙ୍କ ଆଶାକୁ ଧୂଳିସାତ୍ କରି ମୋହନକୁ ହିଁ ଆକାଉଣ୍ଟାଣ୍ଟ ପଦବୀରେ ଅବସ୍ଥାପିତ କରିଥିଲେ। ଯାହାଫଳରେ ଅଫିସ୍‌ରେ ଏକ ଅସ୍ୱାଭାବିକ ଗୁଞ୍ଜରଣ ସୃଷ୍ଟି ହୋଇଥିଲା। ଅଫିସ୍‌ର ସମସ୍ତ ସିନିୟର୍ କର୍ମଚାରୀ ବଡ଼ ସାହେବଙ୍କ ଆଦେଶ ବିରୁଦ୍ଧରେ ପ୍ରତିବାଦ କରି ଉଠିଥିଲେ। ଏପରିକି ଅଫିସ୍‌ର ନେତୃସ୍ଥାନୀୟ କର୍ମଚାରୀ ଜଣେ ବଡ଼ସାହେବଙ୍କୁ ଦୃଢ଼ ଭାବରେ କହିଥିଲେ,- "ସାର୍, ଅଫିସ୍‌ରେ ଅନେକ ସିନିୟର୍ କର୍ମଚାରୀ ଥାଉଁ ଥାଉଁ ଆପଣ ମୋହନକୁ ଆକାଉଣ୍ଟାଣ୍ଟ ଭାବରେ ଅବସ୍ଥାପିତ କରି ବଡ଼ ଅନ୍ୟାୟ କରିଛନ୍ତି !!"

- "କିନ୍ତୁ, ମୁଁ ତ ଭାବୁନାହିଁ ଯେ, କୌଣସି ସିନିୟର୍ କର୍ମଚାରୀଙ୍କ ପ୍ରତି ଅନ୍ୟାୟ କରିଛି ବୋଲି। କାହିଁକି ନା, ମୁଁ ମୋହନକୁ ପ୍ରମୋସନ୍ ଦେଇନାହିଁ।" ବଡ଼ ସାହେବ ନିଜ ପକ୍ଷରୁ ସଫେଇ ଦେଇ କହିଥିଲେ।

- "ପ୍ରମୋସନ୍ ଦେଇନାହାଁନ୍ତି ସତ। ହେଲେ, ପରମ୍ପରା ଅନୁସାରେ ତ ଅଫିସ୍‌ର ସମସ୍ତଙ୍କଠୁଁ ସିନିୟର୍ କର୍ମଚାରୀ ଆକାଉଣ୍ଟାଣ୍ଟ ହେବା କଥା। ଯଥାଶୀଘ୍ର ଆପଣ ଆପଣଙ୍କ ଆଦେଶକୁ ବାତିଲ୍ କରନ୍ତୁ।"

- "ଆଦେଶ ବାତିଲ୍ କରିବା ପ୍ରଶ୍ନ ଉଠୁନାହିଁ। କାରଣ, ଆଗରୁ ମୋ'ର ପୂର୍ବ ଅଫିସର୍‌ମାନେ ଏହି ପରମ୍ପରାକୁ ଭଙ୍ଗ କରିସାରିଛନ୍ତି ଏବଂ ନିଜ ନିଜର ମନ ମୁତାବକ ଦକ୍ଷ ସିନିୟର୍ କର୍ମଚାରୀମାନଙ୍କୁ ଆକାଉଣ୍ଟାଣ୍ଟ ଭାବରେ ଅବସ୍ଥାପିତ କରିଆସିଛନ୍ତି।" ବଡ଼ ସାହେବ କହିଥିଲେ। ଆଉ କ୍ଷଣିଏ କାଳ ଚୁପ୍ ରହି ପୁଣି କହିଥିଲେ,- "ଦେଖନ୍ତୁ,

ମୋ'ର ଆଦେଶକୁ ମୁଁ ନିଶ୍ଚୟ ବାତିଲ୍ କରିବି, ଯଦି ମୋହନ ଆସି ମତେ କହିବ ଯେ, ସେ ଆକାଉଣ୍ଟାଣ୍ଟ ଦାୟିତ୍ୱ ସମ୍ଭାଳି ପାରିବ ନାହିଁ।"

- "ମୋହନ କିନ୍ତୁ ସେ କଥା କହିବ ନାହିଁ। ତେଣୁ, ଆପଣ ନିଜେ ଆଦେଶକୁ ବାତିଲ୍ କରନ୍ତୁ। ନଚେତ୍, ପରେ ଆପଣ ନିଜେ ହିଁ ଅସୁବିଧାରେ ପଡ଼ିବେ। କାରଣ, ମୋହନ ଆକାଉଣ୍ଟାଣ୍ଟ ଭଳି ଗୁରୁତ୍ୱପୂର୍ଣ୍ଣ ପଦବୀ ସମ୍ଭାଳି ପାରିବ ନାହିଁ।"

- "ମୁଁ ଭାବୁଛି, ମୋହନ ସୁରୁଖୁରୁରେ ଆକାଉଣ୍ଟାଣ୍ଟର ଦାୟିତ୍ୱ ସମ୍ଭାଳି ନେବ। ମତେ ଜମା ଅସୁବିଧାରେ ସେ ପକାଇବ ନାହିଁ। କାରଣ, ମୋହନର କାର୍ଯ୍ୟ-ଦକ୍ଷତା ଉପରେ ମୋ'ର ପୂରାପୂରି ବିଶ୍ୱାସ ଅଛି।" ବଡ଼ ସାହେବ ଦୃଢ଼ତାର ସହିତ ଅଫିସ୍‌ର ନେତୃସ୍ଥାନୀୟ କର୍ମଚାରୀଙ୍କୁ କହିଥିଲେ। ଫଳତଃ ନେତୃସ୍ଥାନୀୟ କର୍ମଚାରୀଙ୍କ ପାଟି ବନ୍ଦ ହୋଇଯାଇଥିଲା।

ବଡ଼ସାହେବଙ୍କଠାରେ ପରାଜୟ ସ୍ୱୀକାର କରିବା ପରେ ଅଫିସ୍‌ର ନେତୃସ୍ଥାନୀୟ ଓ ସିନିୟର୍ କର୍ମଚାରୀମାନେ ମୋହନକୁ କିପରି ହତୋତ୍ସାହ କରିବେ, ସେଥିର ଅଭିଯାନ ଆରମ୍ଭ କରିଦେଲେ। ସେମାନଙ୍କର ବିଶ୍ୱାସ ଥିଲା, ମୋହନକୁ ହତୋତ୍ସାହ କରିପାରିଲେ, ସେ ଆପେ ଆପେ ଆକାଉଣ୍ଟାଣ୍ଟ ପଦବୀରୁ ଓହରିଯିବ। ତେଣୁ, ଅଫିସ୍ ଭିତରେ ଓ ବାହାରେ ସେମାନେ ମୋହନ ପ୍ରତି ଟିକା ଟିପ୍ପଣୀ ଫିଙ୍ଗିବାରେ ଲାଗିଲେ। ସହକର୍ମୀମାନଙ୍କ ଟିକାଟିପ୍ପଣୀ ଶୁଣି ଶୁଣି ମୋହନ ଖୁବ୍ ମାନସିକ ପୀଡ଼ା ଅନୁଭବ କରୁଥିଲା। ତାକୁ ବେଶି ବାଧୁଥିଲା ସେତେବେଳେ, ଯେତେବେଳେ ତା'ର ସହକର୍ମୀମାନେ ତା'ର କାର୍ଯ୍ୟଦକ୍ଷତା ଓ ନିଷ୍ଠା ଉପରେ ପ୍ରହାର କରୁଥିଲେ।

ଦିନେ ଅଫିସ୍ କ୍ୟାଣ୍ଟିନ୍‌ରେ ବସି ମୋହନ ଚା' ଖାଉଥାଏ। ଏତିକିବେଳେ ଅଫିସ୍‌ର ସମସ୍ତଙ୍କଠୁଁ ସିନିୟର୍ କ୍ଲର୍କ ଖାନ୍ ବାବୁ ଆସି ମୋହନ ପାଖରେ ବସି ପଡ଼ିଲେ। ଆଉ ମୋହନକୁ ପଚାରିଲେ,- "କ'ଣ ମୋହନ... କେମିତି ଚାଲିଛି ?"

ମୋହନ ଚା' ତକ ଶୀଘ୍ର ଢୋକି ନେଇ ଖାନ୍ ବାବୁଙ୍କୁ କହିଲା,- "ଆଜ୍ଞା ଭଲ।" -"ବୁଝିଲ ମୋହନ, ତମକୁ ଆକାଉଣ୍ଟାଣ୍ଟ ପଦବୀରେ ଅବସ୍ଥାପିତ କରିବା ପୂର୍ବରୁ ବଡ଼ ସାହେବ ମୋ'ର ପରାମର୍ଶ ଲୋଡ଼ିଥିଲେ। ଜାଣିଛ, ତମ ସପକ୍ଷରେ ମୁଁ

ବଡ଼ସାହେବଙ୍କୁ ଭଲ ସୁପାରିଶ କରିଥିଲି।" ଖାନ୍ ବାବୁ କହିଲେ। ଆଉ ମନ୍ଦ ମନ୍ଦ ହସିବାରେ ଲାଗିଲେ।

ଖାନ୍ ବାବୁଙ୍କ କଥା ଶୁଣି ମୋହନ ତାଜୁବ୍ ହୋଇଗଲା। ଆଉ ଭାବିଲା, ଖାନ୍ ବାବୁ ସତରେ କେତେ ମିଛ କହୁଛନ୍ତି!! ଖାନ୍ ବାବୁ ନିଜେ ହିଁ ଆଶାୟୀ ଥିଲେ, ଆକାଉଣ୍ଟାଣ୍ଟ ପଦବୀ ପାଇଁ। ତେଣୁ, ଖାନ୍ ବାବୁ ତା' ବିପକ୍ଷରେ ବଡ଼ ସାହେବଙ୍କ ଠାରେ ଯୁକ୍ତି ବାଢ଼ି କହିଥିଲେ, ମୋହନ ଆକାଉଣ୍ଟାଣ୍ଟର ଦାୟିତ୍ୱ ସମ୍ପାଦନ କରିପାରିବ ନାହିଁ।

ମୋହନ ଚିନ୍ତିତ ଅବସ୍ଥା ଦେଖି ଖାନ୍ ବାବୁ ପଚାରିଲେ,- "କ'ଣ ହେଲା ମୋହନ- ଖୁବ୍ ଚିନ୍ତିତ ହୋଇଗଲ ଯେ?"

- "ନା, ତ।" ହଠାତ୍ ସ୍ୱଭାବନାରୁ ଚେଇଁ ଉଠି ମୋହନ କହିଲା।

- "ଦେଖ ମୋହନ, ତମେ ହେଲ କପଟହୀନ, ଶାନ୍ତ- ଶିଷ୍ଟ ମଣିଷଟିଏ। ତେଣୁ, ଆକାଉଣ୍ଟାଣ୍ଟ ଭାବରେ ତମକୁ ଟିକିଏ ଦେଖି ଚାହିଁ ଚଳିବାକୁ ହେବ। ଏହାଛଡ଼ା, ମୁଁ ଜାଣିଛି, ଲେଖା ଲେଖି ପ୍ରତି ତମର ଅଦମ୍ୟ ଦୁର୍ବଳତା ରହିଛି। ମାତ୍ର, ଆକାଉଣ୍ଟାଣ୍ଟ ପଦବୀରେ ତମେ ରହିଲେ, ତମର ଲେଖା ଲେଖି କାମରେ ବାଧା ଉପୁଜିବ।" ଖାନ୍ ବାବୁ କହିଲେ। ହେଲେ, ଖାନ୍ ବାବୁଙ୍କ ବକ୍ତବ୍ୟ ଉପରେ ମୋହନ କୌଣସି ପ୍ରକାର ପ୍ରତିକ୍ରିୟା ପ୍ରକାଶ କଲା ନାହିଁ।

ଏତିକିବେଳେ ଅଫିସ୍‌ର ଦୁଇଜଣ ସିନିୟର୍ କର୍ମଚାରୀ କ୍ୟାଣ୍ଟିନ୍‌ରେ ଆସି ପହଞ୍ଚିଲେ ଏବଂ ମୋହନ ପାଖରେ ବସି ପଡ଼ିଲେ। ଏହାପରେ ଉଭୟ ସିନିୟର୍ କର୍ମଚାରୀ ପରୋକ୍ଷ ଭାବରେ ମୋହନ ବିରୁଦ୍ଧରେ ଟିପ୍ପଣୀ ମାରିବା ଆରମ୍ଭ କରିଦେଲେ। ତେଣୁ, ମୋହନ୍ ହଠାତ୍ ବସିଥିବା ସ୍ଥାନରୁ ଉଠିପଡ଼ିଲା ଏବଂ ଖାନ୍ ବାବୁଙ୍କୁ କହିଲା,- "ଖାନ୍ ବାବୁ, ମୁଁ ଆସୁଛି, ସେଆଡ଼େ ମୋ'ର ବହୁତ କାମ ଅଛି।" ମୋହନ ତରତର ହୋଇ କ୍ୟାଣ୍ଟିନ୍‌ରୁ ପଳାଇଲା।

କ୍ୟାଣ୍ଟିନ୍‌ରୁ ଫେରି ମୋହନ ଅଫିସ୍‌ର ନିଜ ଆସ୍ଥାନରେ ନଥ କରି ବସିପଡ଼ିଲା। ଆଉ ଭାବିବାରେ ଲାଗିଲା... ଅଫିସ୍‌ର ସହକର୍ମୀମାନେ କାହିଁକି ତା' ପ୍ରତି ଏମିତି ଦାଉ ସାଧୁଛନ୍ତି? ସେ ତ ଚାହୁଁ ନଥିଲା, ଆକାଉଣ୍ଟାଣ୍ଟ ପଦବୀ। ବଡ଼ ସାହେବ

ନିଜେ ତାକୁ ଆକାଉଣ୍ଟାଣ୍ଟ ପଦବୀରେ ଅବସ୍ଥାପିତ କରିଛନ୍ତି। ସେଥିପାଇଁ ସେ ତ ଦୋଷୀ ନୁହେଁ ? ତା'ର ଦୋଷ ନ ଥାଇ ଅଫିସ୍‌ର ସିନିୟର୍ କର୍ମଚାରୀମାନେ ତା'ର ଦକ୍ଷତା ଓ କର୍ମ-ନିଷ୍ଠା ଉପରେ କାହିଁକି ପଦାଘାତ କରୁଛନ୍ତି ? ? ସେମାନଙ୍କର କହିବା ମୁତାବକ୍ ସେ କ'ଣ ଯାଇ ବଡ଼ ସାହେବଙ୍କ ଆଗରେ କହିବ ଯେ, ମୁଁ ପଙ୍ଗୁ, 'ଅଥର୍ବ, ଆକାଉଣ୍ଟାଣ୍ଟ ପଦବୀ ସମ୍ଭାଳି ପାରିବି ନାହିଁ ? ? ? ନା, ନା, ସେ ବଡ଼ ସାହେବଙ୍କ ଆଗରେ ଜମା ତାହା କହିପାରିବ ନାହିଁ ! ! !

ମୋହନର ମୁଣ୍ଡ ଗୋଳମାଳ ହୋଇଗଲା। ସେ ଗଭୀର ଚିନ୍ତାରେ ବୁଡ଼ିଗଲା। ସେହି ଚିନ୍ତିତାବସ୍ଥାରେ ସେ ଶେଷ ନିଷ୍ପତ୍ତି ନେଲା ଯେ, ତା'ର ଆତ୍ମ-ସମ୍ମାନ ବଜାୟ ରଖିବାକୁ ହେଲେ, ତା'ର ଦକ୍ଷତା, କର୍ମ- ନିଷ୍ଠା ଓ ସାଧୁତା ଜରିଆରେ ତା'ର ସହକର୍ମୀଙ୍କ କଟୁ ସମାଲୋଚନାକୁ ତାକୁ ହିଁ ଚିରଦିନ ପାଇଁ ବନ୍ଦ କରିବାକୁ ପଡ଼ିବ ! !



* ୫.୧.୨୦୦୭ର ଦୈନିକ ଅଗ୍ନିଶିଖା ସାହିତ୍ୟ ପୃଷ୍ଠା ମହାନଦୀରେ ପ୍ରକାଶିତ।

# ମିଥ୍ୟା ପ୍ରତିଜ୍ଞା

ନିରନ୍ତର ଅଧ୍ୟବସାୟ, କଠିଣ ପରିଶ୍ରମ ଓ ଦୃଢ଼ ମନୋବଳ ଜରିଆରେ ମଣିଷଟିଏ ତା'ର ଯେ କୌଣସି ଅସମ୍ଭବ ସ୍ୱପ୍ନକୁ ସଫଳ କରିପାରିବ, ଏହା ସତ୍ୟ- ସିଦ୍ଧ। ଏଇ ସ୍ୱପ୍ନ ଓ ସଫଳତା ବିଷୟ ଉପରେ ଆଲୋଚନା ଚାଲିଥିବା ବେଳେ ଦିନେ ବିରାଜ ଅତିଶୟ ଭାବ- ପ୍ରବଣ ହୋଇ ପ୍ରେମିକା ଶର୍ମିଷ୍ଠାକୁ କହିଥିଲା, - "ଶର୍ମିଷ୍ଠା, ଜୀବନରେ ମୁଁ ଶିଳ୍ପପତିଟିଏ ହେବା ପାଇଁ ସବୁବେଳେ ସ୍ୱପ୍ନ ଦେଖି ଆସିଛି। ହେଲେ, ଏବେ ମୁଁ ଅନୁଭବ କରୁଛି ଯେ, ମୋ'ର ସେହି ସ୍ୱପ୍ନ ଯେମିତି ଆଉ ଏ' ଜନ୍ମରେ ସଫଳ ହୋଇପାରିବ ନାହିଁ !!"

ଶର୍ମିଷ୍ଠା କିନ୍ତୁ ବିରାଜର ନକାରାତ୍ମକ ଅଭିବ୍ୟକ୍ତିକୁ ବ୍ୟବହାରିକ ଦୃଷ୍ଟିକୋଣରୁ ଗ୍ରହଣ କରିପାରିନଥିଲା। କାରଣ, ଶର୍ମିଷ୍ଠା ଜାଣିଥିଲା, ଏ' ଦୁନିଆଁରେ କିଛି ଅସମ୍ଭବ ନୁହେଁ। ଯଦି ଗୋଟେ ବ୍ୟକ୍ତିର ଦୃଢ଼ ମନୋବଳ, କଠିଣ କର୍ମ-ନିଷ୍ଠା ଓ ଅଶେଷ ଧୈର୍ଯ୍ୟ ଶକ୍ତି ଅଛି, ତାହେଲେ ତା'ଦ୍ୱାରା ଯେ କୌଣସି ଅସମ୍ଭବ କାର୍ଯ୍ୟ ସମ୍ଭବ ହୋଇପାରିବ। ସୁତରାଂ, ନିଜର ଯୁକ୍ତି ଜରିଆରେ ଶର୍ମିଷ୍ଠା ବିରାଜକୁ ବୁଝାଇ କହିଥିଲା,- "ବିରାଜ, ମୋ' ମତରେ ଏ'ଦୁନିଆଁରେ ସବୁ ସମ୍ଭବ, ଅସମ୍ଭବ ବୋଲି କିଛି ନାହିଁ। ତେଣୁ, ତମ ସ୍ୱପ୍ନର ସଫଳ ରୂପାୟନ ବି ନିଶ୍ଚିତ ଭାବରେ ହେବ, ଏହା ମୁଁ ହଲପ୍ କରି କହିବି। ଏହାଛଡ଼ା, ତମର ପ୍ରତିଭା ଓ କର୍ମ- ନିଷ୍ଠା ଉପରେ ମୋ'ର ଦୃଢ଼ ବିଶ୍ୱାସ ଅଛି, ତମେ ନିଶ୍ଚୟ ଦିନେ ତମର ସ୍ୱପ୍ନକୁ ବାସ୍ତବତାରେ ପରିଣତ କରିପାରିବ !!"

- "ତେବେ ମୁଁ ଆଜି ତମ ସମ୍ମୁଖରେ ପ୍ରତିଜ୍ଞା କରୁଛି ଯେ... ଯେତେଦିନ ପର୍ଯ୍ୟନ୍ତ ମୋ'ର ଅସଂପୂର୍ଣ୍ଣ ସ୍ୱପ୍ନକୁ ସଂପୂର୍ଣ୍ଣ କରିନ ପାରୁଛି, ସେତେଦିନ ପର୍ଯ୍ୟନ୍ତ ମୁଁ ତମକୁ ମୋ'ର ଅର୍ଦ୍ଧାଙ୍ଗିନୀ ଭାବରେ ଗ୍ରହଣ କରିବି ନାହିଁ !! ତମେ ରାଜିତ ଶର୍ମିଷ୍ଠା ?" ବିରାଜ ଆତ୍ମବିଶ୍ୱାସଭରା କଣ୍ଠରେ ଶର୍ମିଷ୍ଠାକୁ କହିଥିଲା।

- "ହଁ, ମୁଁ ରାଜି। ଏହାଛଡ଼ା, ମୁଁ ସେହିଦିନକୁ ବି ଉତ୍କଣ୍ଠାର ସହିତ ଅପେକ୍ଷା କରି ରହିଥିବି, ଯେଉଁଦିନ ତମ ସ୍ୱପ୍ନର ସଫଳ ରୂପାୟନ ହେବ। ଆଶା କରୁଛି, ସେହିଦିନ ତମେ ମତେ ନିରାଶ କରିବ ନାହିଁ। ତମର ପ୍ରତିଜ୍ଞା ମୁତାବକ ମତେ ବାହା ହୋଇ ତମେ

ତମର ଅର୍ଦ୍ଧାଙ୍ଗିନୀ ଭାବରେ ଗ୍ରହଣ କରିବ।” ଶର୍ମିଷ୍ଠା ବିରାଜର ପ୍ରସ୍ତାବକୁ ଗ୍ରହଣ କରି କହିଥିଲା ଏବଂ ବିରାଜର ଆଶୁ ସଫଳତା କାମନା କରି ବିରାଜଠୁଁ ଦୂରେଇ ରହିଥିଲା। ଶର୍ମିଷ୍ଠା ଜାଣିଥିଲା, ତା'ର ଉପସ୍ଥିତିରେ ବିରାଜର କର୍ମ-ନିଷ୍ଠାରେ ବାଧା ସୃଷ୍ଟି ହେବ।

ଇତିମଧ୍ୟରେ ଦଶ ବର୍ଷ ବିତିଯାଇଛି। ଏଇ ଦଶ ବର୍ଷ ଭିତରେ- ବିରାଜର ଭାଗ୍ୟ ପରିବର୍ତ୍ତିତ ହୋଇଯାଇଛି। ତା' ଭାଗ୍ୟର ପରିବର୍ତ୍ତନ ବିଷୟରେ ଭାବିଲେ, ବିରାଜ ଏବେ ତାଜୁବ୍ ହୋଇଯାଏ। ଯେଉଁ ସ୍ୱପ୍ନ କେବେ ସଫଳ ହୋଇପାରିବ ନାହିଁ- ବୋଲି ସେ ଭାବୁଥିଲା, ସେହି ସ୍ୱପ୍ନକୁ ଏଇ ଦଶବର୍ଷ ଭିତରେ ସେ ଆଶ୍ଚର୍ଯ୍ୟ ଜନକ ଭାବରେ ସାକାର ରୂପ ଦେଇ ପାରିଛି। ଏବେ ସେ ଜଣେ ବିଶିଷ୍ଟ ଶିଳ୍ପପତି। ଗୁଡ଼ାଏ ଶିଳ୍ପ ସଂସ୍ଥାର ମାଲିକ। ତା'ର ଅଧୀନରେ ଅନେକ କର୍ମଚାରୀ କାମ କରୁଛନ୍ତି। ବ୍ୟାଙ୍କରେ ଅଛି, ତା'ର ଅପର୍ଯ୍ୟାପ୍ତ ଟଙ୍କା। ରହିବା ପାଇଁ ସେ ତୋଳିଛି, ଗୋଟେ ପ୍ରାସାଦୋପମ ଗୃହ।

ବାଲ୍ୟକାଳରୁ ବିରାଜ ଥିଲା, ଖୁବ୍ କର୍ମଠ ଓ ଅଧ୍ୟବସାୟୀ। କିନ୍ତୁ, ଦାରିଦ୍ର୍ୟ ଭିତରେ ତା'ର ବାଲ୍ୟ ଜୀବନ ଏ'ଭଳି ନିର୍ମମ ଭାବରେ କଟି ଥିଲା, ଯାହା ଭାଷାରେ ବର୍ଣ୍ଣନା କରି ହେବ ନାହିଁ। ତା' ପରେ ସମୟ ଆସିଥିଲା, ଯେତେବେଳେ ତା'ର ଅଧ୍ୟବସାୟ ଓ କର୍ମ-ନିଷ୍ଠା ବଳରେ ସେ ଏକ ଉଚ୍ଚାଭିଳାଷୀ ଶିକ୍ଷିତ ଯୁବକ ଭାବରେ ଦଣ୍ଡାୟମାନ ହୋଇଥିଲା। ଫଳତଃ, ତା' ଜୀବନର ଏକମାତ୍ର ସ୍ୱପ୍ନ “ଜଣେ ବିଶିଷ୍ଟ ଶିଳ୍ପପତି” ହେବାର ଅଦମ୍ୟ ଇଚ୍ଛା ତା'ର ହୃଦୟରେ ଜାଗ୍ରତ ହୋଇଥିଲା। ହେଲେ, ତା'ର ପ୍ରଗାଢ଼ ପ୍ରଚେଷ୍ଟା ସତ୍ତ୍ୱେ ସେ ତା'ର ସ୍ୱପ୍ନକୁ ସଫଳ କରିବା କ୍ଷେତ୍ରରେ ବାରମ୍ବାର ଅକୃତକାର୍ଯ୍ୟ ହୋଇଥିଲା ଏବଂ ତା'ର ଭବିଷ୍ୟତକୁ ନେଇ ଏକ ଦ୍ୱନ୍ଦ୍ୱାତ୍ମକ ମାନସିକତାର ସ୍ଥିତିରେ ଝୁଲୁଥିଲା। ଠିକ୍ ସେହି ସମୟରେ ତା'ର ପ୍ରେମିକା ଶର୍ମିଷ୍ଠାଠୁଁ ଏକ ଅପୂର୍ବ ପ୍ରେରଣା ପାଇଥିଲା, ଯେଉଁ ପ୍ରେରଣାବଳରେତା'ର ଦୃଢ଼ ଆତ୍ମ-ପ୍ରତ୍ୟୟକୁ ସେ ଫେରିପାଇଥିଲା। ଯାହାଫଳରେ ଏବେ ସେ ତା'ର ସ୍ୱପ୍ନକୁ ସଫଳ କରିପାରିଛି। ଅର୍ଥାତ୍ ସେ ଏକ ବିଶିଷ୍ଟ ଶିଳ୍ପପତି ହୋଇପାରିଛି। ମାତ୍ର, ତା'ର ସେହି ପ୍ରେରଣା ଦାୟିନୀ ପ୍ରେମିକା ଶର୍ମିଷ୍ଠାକୁ ସେ ଏବେ ସଂପୂର୍ଣ୍ଣ ଭାବରେ ଭୁଲିଯାଇଛି। ଏପରିକି ଜୀବନରେ ଶର୍ମିଷ୍ଠାକୁ ଅର୍ଦ୍ଧାଙ୍ଗିନୀ ଭାବରେ ଗ୍ରହଣ କରିବା ପାଇଁ ପ୍ରତିଜ୍ଞାବଦ୍ଧ ହୋଇଥିବା ବିଷୟଟିକୁ ବି ପୂରାପୂରି ଭୁଲିଯାଇଛି।

ଦିନେ ଗୋଧୂଳି ବେଳାରେ ବିରାଜ ତା'ର ପ୍ରାସାଦୋପମ ଗୃହ ସମ୍ମୁଖସ୍ଥ ଲନ୍‌ରେ ବସିଥିଲା। କହିବାକୁ ଗଲେ, ଦୈନନ୍ଦିନ କର୍ତ୍ତବ୍ୟ ସାରିଲା ପରେ ତା'ର ଗୃହ ସମ୍ମୁଖସ୍ଥ

ଲନ୍‌ରେ ବସି ସେ ଗୋଧୂଳି ବେଳାର ମାଧୁର୍ଯ୍ୟ ଉପଭୋଗ କରୁଥିଲା । ଏତିକି ବେଳେ ସେ ଦେଖିଥିଲା, ତା' ଗୃହର ଗେଟ୍ ଡେଇଁ ଗୋଟେ ନାରୀ ତା' ଆଡ଼କୁ ବଢ଼ି ଆସୁଛି । ଆଗନ୍ତୁକା ନାରୀଟି ବିରାଜ ନିକଟକୁ ଆସି ପଚାରିଥିଲା,- "ଏ'ଟା କ'ଣ ବିରାଜ ସାମନ୍ତଙ୍କ ଗୃହ ?"

ସନ୍ଦେହାତ୍ମକ ଦୃଷ୍ଟିରେ ଆଗନ୍ତୁକା ନାରୀଟିକୁ ଦେଖି ବିରାଜ କହିଥିଲା,- "ହଁ ! ଆଉ ମୁଁ ସ୍ୱୟଂ ବିରାଜ ସାମନ୍ତ ।"

- "ମୁଁ ଆପଣଙ୍କ ପାଖରେ ବସିପାରେ ?" ଅନୁନୟଭରା କଣ୍ଠରେ ଆଗନ୍ତୁକା ନାରୀଟି ବିରାଜକୁ ପଚାରିଥିଲା ।

- "ଖୁସୀରେ ବସନ୍ତୁ ।" ବିରାଜ ଅନୁମତି ଦେଇ ଆଗନ୍ତୁକା ନାରୀକୁ କହିଥିଲା ।

ଆଗନ୍ତୁକା ନାରୀଟି ବିରାଜ ସମ୍ମୁଖରେ ରଖାଯାଇଥିବା ଗୋଟେ ଚେୟାର୍ ଉପରେ ବସିପଡ଼ିଥିଲା । ଆଉ ଅପଲକ ନୟନରେ ବିରାଜକୁ ଦେଖିବାରେ ଲାଗିଥିଲା ।

ବିରାଜ ଆଗନ୍ତୁକା ନାରୀଟିକୁ ପଚାରିଥିଲା,- "ହଁ, ଏବେ କହନ୍ତୁ, ମୋ'ଠିଁ ଆପଣଙ୍କ କି କାମ ଥିଲା ?"

ବିରାଜ ପକ୍ଷରୁ କରାଯାଇଥିବା ପ୍ରଶ୍ନର ଉତ୍ତର ନ ଦେଇ- ଆଗନ୍ତୁକା ନାରୀଟି ବିରାଜକୁ ପ୍ରତି ପ୍ରଶ୍ନ କରିଥିଲା,- "ବିରାଜ, ମତେ ଚିହ୍ନି ପାରୁଛ ?"

ଆଗନ୍ତୁକା ନାରୀଠୁଁ ଆତ୍ମୀୟତାପୂର୍ଣ୍ଣ ଜିଜ୍ଞାସା ଶୁଣି ବିରାଜ ଏକାବେଳକେ ହତବାକ୍ ହୋଇପଡ଼ିଥିଲା । ଆଉ ସମ୍ମୁଖସ୍ଥ ଆଗନ୍ତୁକା ନାରୀଟିକୁ ଚିହ୍ନିବା ପାଇଁ ପ୍ରୟାସ କରିବାରେ ଲାଗି ପଡ଼ିଥିଲା... କେଉଁଠି ଦେଖିଛି, ନାରୀଟିକୁ ? ? ? ହଠାତ୍ ତା'ର କଣ୍ଠରୁ ଉଚ୍ଚାରିତ ହୋଇଥିଲା,- "ଆରେ ଶର୍ମିଷ୍ଠା ତମେ ! ! !"

ଶର୍ମିଷ୍ଠା ମନ୍ଦ ମନ୍ଦ ହସି ବିରାଜକୁ କହିଥିଲା,- "ହଁ, ମୁଁ ହିଁ ଶର୍ମିଷ୍ଠା, ତମର ପ୍ରେମିକା ଶର୍ମିଷ୍ଠା । କିନ୍ତୁ, ମତେ ଚିହ୍ନିବାରେ ଏତେ ସମୟ ନେବ ବୋଲି ମୁଁ କଳ୍ପନାରେ ସୁଦ୍ଧା ଭାବି ନଥିଲି ।"

- "ମୋ'ର ଭୁଲ୍ ହୋଇଛି, ମୁଁ ସ୍ୱୀକାର କରୁଛି । ସେଥିପାଇଁ କ୍ଷମା ମଧ୍ୟ ମାଗୁଛି ।" କ୍ଷମାଭରା କଣ୍ଠରେ ବିରାଜ ଶର୍ମିଷ୍ଠାକୁ କହିଥିଲା ।

- "ଆଚ୍ଛା ଛାଡ଼ ଏ' ବିଷୟ। ମୁଁ ଯେଉଁଥିପାଇଁ ଏଠିକୁ ଆସିଛି, ସେହି ବିଷୟ କହୁଛି। ମନେ ପକାଅ... ଦଶବର୍ଷ ତଳେ ତମେ ମୋ'ଠିଁ ଗୋଟେ ପ୍ରତିଜ୍ଞା କରିଥିଲ...।"

କଥା ମଝିରେ ହଠାତ୍ ବାଧା ଦେଇ ବିରାଜ କହିଥିଲା,- "ହେଲେ, ମୁଁ ଯେ ଏବେ ବିବାହିତ। ପୁଣି ମୋ'ର ସ୍ତ୍ରୀ ଓ ଦୁଇଟି ସନ୍ତାନ ଅଛନ୍ତି। ଏ'ଭଳି ପରିସ୍ଥିତିରେ ଦଶବର୍ଷତଳର ସେହି ପ୍ରତିଜ୍ଞାଟି ଏବେ ପାଳନ କରିବା ମୋ' ପକ୍ଷେ ଆଦୌ ସମ୍ଭବପର ନୁହେଁ!!"

- "ତେବେ ମୋ'ଠିଁ ତମେ ପ୍ରତିଜ୍ଞା କରୁଥିଲ କାହିଁକି ? ଗୋଟେ ନିରୀହା ନାରୀକୁ ପ୍ରବଂଚିତ କରିବା ପାଇଁ କ'ଣ ତମର ଉଦ୍ଦେଶ୍ୟ ଥିଲା ?" ଶର୍ମିଷ୍ଠା ଉତ୍ତେଜନାରେ ଧୈର୍ଯ୍ୟହରା ହୋଇ ବିରାଜକୁ ପଚାରିଥିଲା। ହେଲେ, ବିରାଜ ପାଖରେ ଶର୍ମିଷ୍ଠା ପକ୍ଷରୁ ପଚରା ଯାଇଥିବା ପ୍ରଶ୍ନର ଉତ୍ତର ନଥିଲା। ଫଳତଃ ଅପରାଧୀ ଭଳି ନିଜର ମୁଣ୍ଡକୁ ନତ କରିବା ଛଡ଼ା ତା'ର ଅନ୍ୟ ଉପାୟ ନଥିଲା।

ବିରାଜର ମନୋଭାବରୁ ଶର୍ମିଷ୍ଠା ଜାଣିପାରିଥିଲା ଯେ, ସେ ପ୍ରତାରିତ ହୋଇଛି। ମିଥ୍ୟାପ୍ରତିଜ୍ଞାରୂପୀ ମୃଗ ତୃଷ୍ଣା ପଛରେ ଧାଇଁ ଧାଇଁ ଅଯଥାରେ ନିଜର ବୟସ ଗଡ଼ାଇଛି।

ହଠାତ୍ ଶର୍ମିଷ୍ଠା ବସିଥିବା ଚେୟାର୍‌ରୁ ଉଠିପଡ଼ିଥିଲା। ଆଉ ବିରାଜଠୁଁ ବିଦାୟ ନ ମାଗି ସେଠୁ ପଳାଇଥିଲା। ପଳାଇ ଯାଉଥିବା ବେଳେ ଶର୍ମିଷ୍ଠାକୁ ଦେଖି ମନେ ହୋଇଥିଲା, ତା'ର ସୁନ୍ଦର ମୁହଁଟି ଯେମିତି ଆସନ୍ନ ରାତ୍ରିର କାଳିମା ପରି ବିବର୍ଣ୍ଣ ହୋଇଉଠିଛି!!



* ଦୈନିକ ଜନମୁଖ-୧୪.୧୨.୨୦୦୫ ରେ ପ୍ରକାଶିତ।

# ସତ୍ୟମେବ ଜୟତେ

ଶୀୟନ କୋଠରୀର କାନ୍ଥ ଉପରକୁ ଅନାଇଲେ, ସତ୍ୟବାନର ଆଖି ପଡ଼ିଯାଏ, "ସତ୍ୟମେବ ଜୟତେ" ଫଳକ ଉପରେ। ଗୋଲ ଗୋଲ ବଡ଼ ଅକ୍ଷରରେ ଲେଖା ହୋଇଛି, ଫଳକଟି। ସତ୍ୟବାନର ମୁଣ୍ଡ ଆପେ ଆପେ ନଇଁ ପଡ଼େ, ଫଳକ ନିକଟରେ। ମା' କହେ, ଫଳକଟି ତା'ର ବାପା ନିଜ ହାତରେ ଅତି ଯତ୍ନର ସହିତ ଲେଖିଥିଲେ। ବାପା ତା'ର ଥିଲେ, ସତ୍ୟର ପୂଜାରୀ। ସେଥିପାଇଁ ବୋଧହୁଏ ତା'ର ବାପା ତା'ର ନାମ ସତ୍ୟବାନ ରଖିଥିଲେ। ଏହି ସତ୍ୟ ରୂପୀ ଆଦର୍ଶକୁ ରକ୍ଷା କରିବା ପଥରେ ବି ସେ ପ୍ରାଣତ୍ୟାଗ କରିଥିଲେ।

ସତ୍ୟବାନର ବାପା ଥିଲେ, ଶିକ୍ଷିତ ଓ ସାଲିସ ବିହୀନ ମଣିଷଟିଏ। ସ୍ୱାଧୀନ ଚେତା ବ୍ୟକ୍ତିତ୍ୱର ଅଧିକାରୀ ହୋଇଥିବାରୁ ସେ ସତ୍ୟ ଓ ନ୍ୟାୟର ପୂଜାରୀ ଥିଲେ। ଜୀବନରେ ଭଲ ଭଲ ସରକାରୀ ଚାକିରୀ ମିଳୁଥିଲେ ମଧ୍ୟ ସେ କୌଣସି ଚାକିରୀକୁ ଗ୍ରହଣ କରିନଥିଲେ ଏବଂ ସ୍ୱାଧୀନତାର ପ୍ରତୀକ ଆଇନବୃତ୍ତିକୁ ଗ୍ରହଣ କରିଥିଲେ। ଜଣେ ଆଇନଜ୍ଞ ହୋଇଥିବାରୁ ନିର୍ଯ୍ୟାତିତ ଗରିବ ମଣିଷର ହକ୍ ପାଇଁ ସେ ସବୁବେଳେ ସଂଘର୍ଷ କରୁଥିଲେ। ସେହିପରି ଜଣେ ନିର୍ଯ୍ୟାତିତ ଗରବ ବ୍ୟକ୍ତିର ହକ୍ ପାଇଁ ଲଢୁଥିବା ବେଳେ ଦିନେ ପୁଲିସ୍ ତାଙ୍କୁ ମୃତାବସ୍ଥାରେ ପାଇଥିଲା, ସହରର ଏକ ନିଛାଟିଆ ରାସ୍ତାରେ। ତାଙ୍କ ଭଳି ଜଣେ ସତ୍ୟ ଓ ନ୍ୟାୟର ପୂଜାରୀଙ୍କ ହତ୍ୟା ଜନିତ ମୃତ୍ୟୁର ରହସ୍ୟ ଏ' ପର୍ଯ୍ୟନ୍ତ ରହିଯାଇଛି, ଅନାବୃତ।

ଯେତେବେଳେ ସତ୍ୟବାନର ବାପାଙ୍କ ମୃତ୍ୟୁ ହୋଇଥିଲା, ସେତେବେଳେ ସେ ଏତେ ଛୋଟ ଥିଲା ଯେ, ବାପାଙ୍କ ସ୍ମୃତିକୁ ଜମା ମନେ ପକାଇପାରେ ନାହିଁ। ତଥାପି, ସେ ତା'ର ବାପାଙ୍କ ସତ୍ତାକୁ ଆବିଷ୍କାର କରିବା ପାଇଁ ଚେଷ୍ଟା କରେ। ମାତ୍ର, ତା'ର ଶତ ଚେଷ୍ଟା ସତ୍ତ୍ୱେ ସେଥିରେ କୃତକାର୍ଯ୍ୟ ହୋଇପାରେ ନାହିଁ। ଅର୍ଥାତ୍, ତା'ର ବାପାଙ୍କ ସତ୍ତାକୁ ଆବିଷ୍କାର କରିପାରେ ନାହିଁ।

ଏବେ କିନ୍ତୁ ସତ୍ୟବାନ ଗୋଟେ ତଥ୍ୟ ବିଷୟରେ ବୁଝିପାରେ ନାହିଁ ଯେ, ଜୀବନରେ ତା'ର ବାପା ସତ୍ୟ ଓ ନ୍ୟାୟ ପାଇଁ ସଂଘର୍ଷ କରି କ'ଣ ପାଇଲେ ? ସେ ଜାଣିଥିଲା, କୌଣସି ଉଦ୍ଦେଶ୍ୟକୁ ନେଇ ମଣିଷ ସଂଘର୍ଷ କରେ, ଜୀବନରେ କିଛି ପାଇବା ପାଇଁ। ମାତ୍ର, ତା'ର ବାପା ଏମିତି ଏକ ଉଦ୍ଦେଶ୍ୟ ପାଇଁ ସଂଘର୍ଷ କରୁଥିଲେ, ଯାହା ତାଙ୍କର ଜୀବନ ତ ନେଲା, ତା' ସହିତ ତାଙ୍କ ପରିବାରକୁ ଦୁଃଖ- ସାଗରରେ ବୁଡ଼ାଇ ଦେଲା।

ବାପାଙ୍କ ମୃତ୍ୟୁ ପରେ ସତ୍ୟବାନର ମା'ଙ୍କ ଉପରେ ଚଡ଼କ ପଡ଼ିଥିଲା। ବାପା ଥିଲେ, ପରିବାରର ଏକମାତ୍ର ପୋଷଣ କର୍ତ୍ତା। ସେ ଚାଲିଗଲା ପରେ ପରିବାରର ଆର୍ଥିକ ଅବସ୍ଥା କିଛି

ମାସ ମଧ୍ୟରେ ଦୁର୍ବଳ ହୋଇପଡ଼ିଲା। ଏପରିକି ଏ'ଭଳି ଶୋଚନୀୟ ଅବସ୍ଥା ସୃଷ୍ଟି ହେଲା ଯେ, କେବେ କେବେ ଗୃହରେ ଚୂଲି ଜଳିବା ଅସମ୍ଭବ ହୋଇପଡ଼ିଲା। ସତ୍ୟବାନର ମା'ଙ୍କ ପକ୍ଷେ ପରିବାରର ଦୟନୀୟ ଆର୍ଥିକ ଅବସ୍ଥା ଅସହନୀୟ ହେଲା। ତେଣୁ, ସବୁ ଲୋକ ଲଜ୍ଜା ଓ ବୃଥା ଆଭିଜାତ୍ୟକୁ ଗୋଡ଼ରେ ଦଳି ଦେଇ ସେ ଅଣ୍ଟାରେ ଲୁଗା ଭିଡ଼ିଲେ, ପରିବାରକୁ ଚଳାଇବା ପାଇଁ। ବେଶି ଚିନ୍ତା ଥିଲା, ତାଙ୍କ ପୁଅ ସତ୍ୟବାନର ଭବିଷ୍ୟତ।

ସତ୍ୟବାନର ମା' ବେଶି ପାଠପଢ଼ି ନଥିଲେ। ଶିକ୍ଷାଗତ ଯୋଗ୍ୟତା କହିଲେ, ସେ ଲେଖି ପଢ଼ି ଜାଣିଥିଲେ, ହିସାବ ପତ୍ର ବି ଭଲ ଭାବରେ ଜାଣିଥିଲେ। ତେବେ ଏତିକି ଶିକ୍ଷାଗତ ଯୋଗ୍ୟତାରେ ତାଙ୍କୁ ବା କେଉଁଠି ସମ୍ମାନଜନକ ଚାକିରୀଟିଏ ମିଳିବ ? ତଥାପି, ତାଙ୍କର କିଛି ପରବାୟ ନଥିଲା। କାରଣ ତାଙ୍କର ଦିଓଟି ଶକ୍ତ ହାତ ଥିଲା, ଯାହା ବଳରେ ସେ କିଛି କରିପାରିବେ। ଏକ ମଧ୍ୟବିତ୍ତ ପରିବାରର ଝିଅ ହୋଇଥିବାରୁ ସେ ପାରିବାରିକ ସୂତ୍ରରୁ ପାଇଥିଲେ, ହସ୍ତକର୍ମ- ଶିକ୍ଷା। ଅର୍ଥାତ୍, ବୁଣାବୁଣି ଓ ସିଲେଇ କାମରେ ସେ ସିଦ୍ଧହସ୍ତା ଥିଲେ। ତେଣୁ, ସ୍ୱାମୀଙ୍କ ମୃତ୍ୟୁ ପରେ ସେ ଏଇ ବୁଣାବୁଣି ଓ ସିଲେଇ କାମକୁ ଆଦରି ନେଲେ, ଆର୍ଥିକ ଅନାଟନ ଦେଇ ଗତି କରୁଥିବା ନିଜ ପରିବାରକୁ ସମ୍ଭାଳିବା ପାଇଁ। ଏହାଛଡ଼ା, ଗୃହରେ ଥିଲା, ସିଲେଇ ମେସିନ୍- ଏଇ ସିଲେଇ କାମ ଆଦରି ନେବାରେ କୌଣସି ଅସୁବିଧା ହେଲା ନାହିଁ।

ଦୀର୍ଘ ୨୦ ବର୍ଷ ହେଲା, ସେ ଏଇ ବୁଣାବୁଣି, ସିଲେଇ କାମ କରିଆସୁଛନ୍ତି। ଏଇ ବୃତ୍ତିଯୋଗୁଁ ହିଁ ସେ ନିଜ ପତନୋନ୍ମୁଖୀ ପରିବାରକୁ ସମ୍ଭାଳିଛନ୍ତି, ପିତୃହରା ପୁଅକୁ ଉଚ୍ଚତମ ଶିକ୍ଷାରେ ଦୀକ୍ଷିତ କରାଇପାରିଛନ୍ତି। ତଥାପି, ଏଇ ବୃତ୍ତିରୁ ତାଙ୍କୁ ନିସ୍ତାର ମିଳିପାରିନାହିଁ। କାରଣ, ତାଙ୍କର ପୁଅ ଉଚ୍ଚଶିକ୍ଷିତ ହେଲେ ମଧ୍ୟ ଏ'ଯାଏଁ ଚାକିରୀଟିଏ ପାଇପାରିନାହିଁ। ଚାକିରୀଟିଏ ପାଇବା ପାଇଁ ସେ ଅକଥନୀୟ ଉଦ୍ୟମ କରୁଛି, ବିଭିନ୍ନ ପ୍ରତିଯୋଗିତାମୂଳକ ପରୀକ୍ଷାମାନ ଦେଉଛି। ହେଲେ, ଭାଗ୍ୟ ବୋଧହୁଏ- ଅନୁକୂଳ ନୁହେଁ, ଚାକିରୀଟିଏ ତାକୁ ମିଳୁନାହିଁ।

ସତ୍ୟବାନର ମା' ଏବେ ଲକ୍ଷ୍ୟ କରୁଛନ୍ତି- ତାଙ୍କ ପୁତ୍ରର ଚାଲିଚଳନ ଓ ଭାବ-ଭଙ୍ଗୀରେ ଏକ ବିରାଟ ପରିବର୍ତ୍ତନ। ଏବେ ତାଙ୍କ ପୁତ୍ର ହଠାତ୍ ପ୍ରଗଲ୍ଭ ହୋଇଉଠୁଛି, କଥା କଥାରେ ପ୍ରତିବାଦର ସ୍ୱର ଉତ୍ତୋଳନ କରୁଛି। ତାଙ୍କ ପୁଅର ପରିବର୍ତ୍ତିତ ଚାଲିଚଳନ ଓ ଭାବଭଙ୍ଗୀ ଦେଖି ତାଙ୍କର ମନେହୁଏ, ସତେ ଯେମିତି ପୁତ୍ରର ସମଗ୍ର ସତ୍ତାରେ ଧ୍ୱଂସାତ୍ମକ ଉନ୍ମାଦନାର ଲହରୀଟିଏ ସବାର ହୋଇପଡୁଛି। ସେ ପୁତ୍ରର ପରିବର୍ତ୍ତିତ ଚାଲି-ଚଳନ ଓ ଭାବ-ଭଙ୍ଗୀ ଦେଖି ଶଙ୍କିତ ହୋଇପଡନ୍ତି।

ଦିନେ ସତ୍ୟବାନ ତା'ର ମା'ଙ୍କ ପାଖକୁ ଆସି ଉତ୍ତେଜନାପୂର୍ଣ୍ଣ ସ୍ୱରରେ କହିଲା,- "ମା', ପ୍ରତ୍ୟେକ ବିଷୟରେ ଗୋଟେ ସୀମା ଥାଏ...।"

ମା' କଥା ମଝିରେ ବାଧା ଦେଇ ସତ୍ୟବାନକୁ ପଚାରିଲେ,-"ଏମିତି ଉତ୍ତେଜିତ ହେଉଛୁ କାହିଁକି ? ତୋ'ର କ'ଣ ହେଲା ? ?"

-"ମା', ଆଜି ମୋ'ର ଧୈର୍ଯ୍ୟ ସୀମା- ଚ୍ୟୁତ ହୋଇପଡ଼ିଛି। ତୋ'ର ଏ' ବୟସରେ ପରିଶ୍ରମ କରୁଥିବା ଦେଖି ମୁଁ ଧୈର୍ଯ୍ୟ ଧରି ରହିପାରୁନାହିଁ। ଏହାଛଡ଼ା, ଆଉ ଗୋଟେ କଥା ଜାଣି ତୁ ଆଶ୍ଚର୍ଯ୍ୟ ହେବୁ।" ସତ୍ୟବାନ କହିବାରେ ଲାଗିଲା,- "ମା' ଜାଣୁ, ମୋ'ଠୁ ଯୋଗ୍ୟତାରେ ନ୍ୟୂନ ହୋଇ ଚାକିରୀଟି ପାଇଗଲା ଜଣେ। ଅଥଚ, ମୋ'ର ଭଲ ଯୋଗ୍ୟତା ଥାଇ ଭଲ ଭାବରେ ଇଣ୍ଟରଭ୍ୟୁ ଦେଇ ବି ମୁଁ ଚାକିରୀଟି ପାଇପାରିଲି ନାହିଁ। ଏପରିକି ମୋ'ର ପ୍ରତିବାଦ ସତ୍ତ୍ୱେ ଫଳ କିଛି ହେଲା ନାହିଁ। ମୁଁ ଭାବୁଛି, ଏ'ଯୁଗରେ ସତ୍ୟର ଜୟ ନାହିଁ, ନ୍ୟାୟର ଜୟ ନାହିଁ ! ! ମତେ ଭୟ ଲାଗୁଛି, ମୁଁ କାହିଁ ଅନର୍ଥ କାମ କେବେ କରିନ ବସେ !" ସତ୍ୟବାନର ଅଭିବ୍ୟକ୍ତିରେ ଧ୍ୱଂସାତ୍ମକ ସ୍ୱରର ଇଙ୍ଗିତ ଥିଲା। ଫଳତଃ ତା'ର ମା' ଶଙ୍କିତ ହୋଇପଡ଼ିଲେ। ଅତି କୋମଳ ସ୍ୱରରେ ପୁତ୍ର ସତ୍ୟବାନକୁ ସେ ବୁଝାଇବାରେ ଲାଗଲେ,- "ବାପା, ତୁ ଏମିତି ସେମିତି କାମ କରିବୁ ନାହିଁ, ଯାହା ତୋ'ର ବାପାଙ୍କ ଭାବନା ଓ ଆଦର୍ଶରେ ଆଞ୍ଚ ଆଣିବ। ବାପା, ଦେଖୁଛୁ, ଏଇ "ସତ୍ୟମେବ ଜୟତେ" ଫଳକକୁ। ଏଇଟା ଖାଲି ଗୋଟେ ଫଳକ ନୁହେଁ, ତୋ' ବାପାଙ୍କ ପ୍ରେରଣାର ଉତ୍ସ। ଏଇ ଫଳକର ଆଦର୍ଶରେ ଅନୁପ୍ରାଣିତ ହୋଇ ତୋ'ର ବାପା ନିଜର ବଳିଦାନ ଦେଇଛନ୍ତି। ଅବଶ୍ୟ ଏଇ ବଳିଦାନରେ ତୋ'ର ବାପା କିଛି ଲାଭବାନ୍ ହୋଇନାହାଁନ୍ତି। ହେଲେ, ମୋ' ଭଳି ଜଣେ ଅଶିକ୍ଷିତା ନାରୀକୁ ଯେଉଁ ପ୍ରେରଣା ଦେଇଛି, ତାହା ମୋ'ର ଦୁର୍ବଳ ନାରୀ ହୃଦୟରେ ସଚେତନତା ଓ ସାହସ ଭରି ଦେଇପାରିଛି। ଯାହା ଫଳରେ ମୋ'ରପରିବାରକୁ ମୁଁ ବଞ୍ଚାଇପାରିଛି, ତତେ ଉଚ୍ଚତମ ଶିକ୍ଷା ଦେଇପାରିଛି। ସେଥିପାଇଁ ବାପା, ତୁ ଧୈର୍ଯ୍ୟ ଧରିଥା', ତୋ'ର ବାପାଙ୍କ ଆଦର୍ଶ ଓ ବିଶ୍ୱାସ ବ୍ୟର୍ଥ ହେବ ନାହିଁ, ନିଶ୍ଚୟ ଦିନେ ନା ଦିନେ ସତ୍ୟ ଓ ନ୍ୟାୟର ଜୟ ହେବ ! !"

ମା'ଙ୍କ ଉପଦେଶାତ୍ମକ ବାଣୀ ଶୁଣି ସତ୍ୟବାନ ଗମ୍ଭୀର ହୋଇଗଲା। ଟିକିଏ ପୂର୍ବରୁ ଯୁକ୍ତିତର୍କ କରିବାର ଯେଉଁ ଉତ୍ତେଜିତ ଅବସ୍ଥାଟିଏ ତା'ର ଶରୀରରେ ତରଙ୍ଗାୟିତ ହେଉଥିଲା, ତାହା ଥଣ୍ଡା ପଡ଼ିଗଲା, ଫ୍ରିଜ୍‌ର ବରଫ ଭଳି। ମା'ଙ୍କଠାରେ ଅନୁତପ୍ତ ସ୍ୱରରେ ସେ ଦୋଷ କରିଛି ବୋଲି କ୍ଷମା ମାଗିଲା।

ତା'ପରେ ଗୃହର କାନ୍ଥରେ ଟଙ୍ଗା ଯାଇଥିବା "ସତ୍ୟମେବ ଜୟତେ" ଫଳକ ତଳକୁ ସେ ଚାଲି ଆସି ମୁଣ୍ଡ ନତ କଲା।



*ଦୈନିକ ଅଗ୍ନିଶିଖା ୧୭.୧୧.୨୦୦୬ ସଂଖ୍ୟାର ସାହିତ୍ୟ ପୃଷ୍ଠା "ମହାନଦୀ"ରେ ପ୍ରକାଶିତ।



# ଜନ୍ମେଜୟ ବାବୁ

ପଟ୍ଟନାୟକପଡା, ସମ୍ବଲପୁର

ପିନ୍ - ୭୬୮୦୦୧

ଫୋନ - (୦୬୬୩) ୨୪୦୫୪୧୩